ପ୍ରକାଶକ :—
କଳା-କୁଟୀର,
ରାମପୁର, କାଣ୍ଟପୁର,
ପୁରୀ

ପ୍ରଥମ ପ୍ରକାଶ—୧୯୬୦

ମୂଲ୍ୟ—ଦୁଇ ଟଙ୍କା

ମୁଦ୍ରାକର :—
ଶ୍ରୀ ସାଧୁଚରଣ ଦାସ, ବି.ଏ., ବି ଇଡ୍.,
କିଶୋର ପ୍ରେସ୍, ବ୍ରହ୍ମପୁର
ଗଞ୍ଜାମ—୧୯୬୦ (୭୦୦)

## ଉତ୍ସର୍ଗ—

ମୋର ଶ୍ରଦ୍ଧେୟ ଛାତ୍ର

ଶ୍ରୀମାନ୍ ମଦନମୋହନ ମିଶ୍ର, ଏମ୍.ଏ., ଏମ୍.ଇଡ଼୍. ଙ୍କ

ନାମରେ·...............

# ଆଦ୍ୟବାଣୀ—

ଓଡ଼ିଶାର ଜନପ୍ରିୟ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଅନ୍ୟତମ କବିତା ଗ୍ରନ୍ଥ 'ହଂସ' କବି କୁଟୀରର ଷଷ୍ଠ ଅବଦାନ ରୂପେ ପ୍ରକାଶିତ ହେଲା । ଏ କବିତା ସବୁ ବିଭିନ୍ନ ସମୟର ଲେଖା ଓ ଏଥିରୁ ଅଧିକାଂଶ ଝଙ୍କାର, ସହକାର, ରବିବାର ପ୍ରଜାତନ୍ତ୍ର ଇତ୍ୟାଦି ଓଡ଼ିଶାର ବିଭିନ୍ନ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଓଡ଼ିଶାର ବରେଣ୍ୟ କବି ଡ଼କ୍ଟର ମାୟାଧର ମାନସିଂହ କବି ଶ୍ରୀଯୁକ୍ତ ତ୍ରିପାଠୀଙ୍କର 'ଆହ୍ଵାନ' 'ରୂପାୟନ' 'ଅଗ୍ନିଶଙ୍ଖ' 'ମାଟିଦୀପ' 'ଆତ୍ମଲିପି' ଇତ୍ୟାଦି ସମଗ୍ର କବିତା ଗ୍ରନ୍ଥ ପଢ଼ି ଗୋଟିଏ ସଂକ୍ଷିପ୍ତ ଅଥଚ ସୁନ୍ଦର ଆଲୋଚନା ସ୍ୱତଃପ୍ରବୃତ୍ତ ହୋଇ ୯-୪-୬୯ ତାରିଖର ଦୈନିକ ସମାଜରେ ପ୍ରକାଶ କରିଥିଲେ । ଡ଼କ୍ଟର ମାୟାଧର ମାନସିଂହଙ୍କ ଆଲୋଚନାଟି ପଢ଼ି କବିଙ୍କର ଶତାଧିକ ସାହିତ୍ୟିକ ବନ୍ଧୁ କଏବା ମୌଖିକ ଭାବରେ, କଏବା ଖୋଲା ଚିଠି ଲେଖି, କବିଙ୍କୁ ଅଭିନନ୍ଦନ ଜଣାଇଥିଲେ ଏବଂ ଡ଼କ୍ଟର ମାୟାଧର ମାନସିଂହଙ୍କ ଭଳି ଗୁଣଗ୍ରାହୀ କବି, ଯେ ପ୍ରକୃତରେ ତ୍ରିପାଠୀ କବିଙ୍କ କବିତାର ମୂଳ୍ୟ ବୁଝି ଜନ ସମାଜରେ ତାଙ୍କୁ ଆହୁରି ପରିଚିତ କରାଇଥିଲେ, ଏହା ତାଙ୍କ ଭଳି ଗୁଣୀଲୋକ ଭିନ୍ନ ଅନ୍ୟତ୍ର କ୍ୱଚିତ୍ ଦେଖାଯାଏ ବୋଲି କହିଥିଲେ । ଡ଼କ୍ଟର ମାନସିଂହଙ୍କ ଉକ୍ତ ଅଭିନନ୍ଦନ ମୂଳକ ସୁନ୍ଦର, ମୂଲ୍ୟବାନ, ହୃଦୟଗ୍ରାହୀ ଲେଖାଟି କବିଙ୍କର ପରବର୍ତ୍ତୀ କୌଣସି କବିତା ଗ୍ରନ୍ଥର ଆଦ୍ୟରେ ପ୍ରକାଶ କରିବାକୁ ସେମାନେ ମତବ୍ୟକ୍ତ କରିଥିଲେ ।

ଆମ୍ଭେମାନେ ଡ଼କ୍ଟର ମାନସିଂହଙ୍କ ପ୍ରତି ତାଙ୍କର ଏଇ ଅଯାଚିତ ଦାନ ପାଇଁ କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ଦେଶବାସୀ ବହୁ ସାହିତ୍ୟିକ ବନ୍ଧୁଙ୍କର ଅନୁରୋଧକୁ ଗ୍ରହଣ କରି ଡ଼କ୍ଟର ମାନସିଂହଙ୍କ ଆଲୋଚନାଟି ଏ ଗ୍ରନ୍ଥର ଆଦ୍ୟରେ ଆନ୍ତରିକ ଆନନ୍ଦ ସହିତ ପ୍ରକାଶ କଲୁ ।

କବିଙ୍କ ଗାଁର ଉଦୀୟମାନ ଚିତ୍ରଶିଳ୍ପୀ ଶ୍ରୀମାନ୍ ରଙ୍ଗନାଥ ସ୍ୱାଇଁ 'ହଂସ'ର ପ୍ରଚ୍ଛଦ ପଟଟି ଅଙ୍କନ କରି ଦେଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛୁ ।

ଜୟହିନ୍ଦ୍

ବାଣପୁର — ପ୍ରକାଶକ

୨୦ । ୧୧ । ୬୦ — **କବି-କୁଟୀର**

# କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ

## ଡକ୍ଟର ମାୟାଧର ମାନସିଂହ

ବାଣପୁରର ତରୁଣ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର କବିତା ଓଡ଼ିଶାର ପତ୍ର ପତ୍ରିକାରେ ବହୁ ବର୍ଷ ଧରି ପଢ଼ି ଆସୁଛି । କିନ୍ତୁ ଗତ ଦୁଇ ବର୍ଷ ଭିତରେ ତାଙ୍କର କେତୋଟି କବିତା ସଂକଳନ, ମାଟିଦୀପ, ଅଗ୍ନିଶଙ୍ଖ, ଆହ୍ୱାନ, ରୂପାୟନ ଇତ୍ୟାଦି ପଢ଼ିବାକୁ ପାଇ ଏଇ କବିଙ୍କର ଅନ୍ତର୍ନିହିତ ହୋମ-ଶିଖା ସହିତ ପ୍ରତ୍ୟକ୍ଷ ଓ ନିବିଡ଼ ପରିଚୟର ଯେଉଁ ଆନନ୍ଦ ମୁଁ ପାଇଛି, ତାହା ପ୍ରକାଶ୍ୟରେ ନ ଜଣାଇ ରହିପାରୁନି । ଏଇ ତରୁଣ କବି ବର୍ତ୍ତମାନ ଜଣେ ସାମାନ୍ୟ ଶିକ୍ଷକ ମାତ୍ର । ଏଇ ହତଭାଗ୍ୟ ଦେଶରେ ଲୋକର ସମ୍ମାନ ସହଜାତ ଗୁଣରୁ ଆସେନା-ଆସେ ଧନ ଓ ଆସନରୁ । ଦୂରଦୂରାନ୍ତ କୌଣସି ଏକ ଅଜ୍ଞାତ ସ୍କୁଲର ଅବଧାନ ମାତ୍ର ଏଇ କୃଷ୍ଣଚନ୍ଦ୍ର ତ୍ରିପାଠୀ କବି ଭାବରେ, ତେଣୁ, କି ସମ୍ମାନ ଆଶାକରି ପାରନ୍ତି ? ସେଥିପାଇଁ ହୁଏତ ଏଇ କବିଙ୍କର କୌଣସି ଆଲୋଚନା ଓଡ଼ିଶାର କୌଣସି ପତ୍ର ପତ୍ରିକାରେ ଏ ପର୍ଯ୍ୟନ୍ତ ଦେଖା ଯାଇନାହିଁ । କିନ୍ତୁ ସୁଦୂର ପଲ୍ଲୀ ଅଭ୍ୟନ୍ତରରେ, ଆପଣାର ଦରିଦ୍ର କୁଟୀରରେ ନିଃସଙ୍ଗ ନିଶୀଥର ମ୍ଳାନ ଦୀପଶିଖା ତଳେ ଏଇ କବି, ଦେଶର ମାନଗାନକୁ ଅପେକ୍ଷା ନକରି, ଯେପରି ନିରବଚ୍ଛିନ୍ନ ଭାବରେ ଅଗଣିତ କବିତାରେ ଦେଶ ଓ ଜାତିର ଦୁଃଖରେ ଅଭିଭୂତ ନିଜର କୋମଳ ଆତ୍ମାକୁ ଢ଼ାଳି ଚାଲିଛନ୍ତି, ତାହା ବିଚାର କରି ମୁଁ ମୁଗ୍ଧ ଭାବରେ ଠିଆ ହୋଇଛି ।

'ମାଟିଦୀପ'ରେ କବି ଗାଇଛନ୍ତି—

"ନିସ୍ପନ୍ଦ ମୋ ଝର ପଡ଼େ
ଲୋତକର ଝରଣା,
ଆକାଶେ ବତାଶେ ଗୁନ୍ଧି
ଫେରୁଚି ମୁଁ କୁଟୀରେ
ପଥ ବଡ଼ ଦୁର୍ଗମ
କ୍ଲାନ୍ତ ମୁଁ ଶ୍ରାନ୍ତ
ଏକା ମୁଁ ଯେ କେହି ନାହିଁ
ବନ୍ଧୁ ମୋ ସାଥିରେ !
ମୋ ମରମ ବୁଝି ମୋରେ
କରିବ ଯେ ଶାନ୍ତ ।"

ଜଗତର ଓ ନିଜର ଦୁଃଖରେ ଅଭିଭୂତ କବି, ଚତୁର୍ଦ୍ଦିଗରେ ଅନ୍ୟାୟ ଅତ୍ୟାଚାରର ତାଣ୍ଡବଲୀଳା ଦେଖି ଦେଖି, ବାରବାର ଦୀର୍ଘଶ୍ୱାସ ପରିତ୍ୟାଗ କରିଛନ୍ତି ସତ, କିନ୍ତୁ ବାରମ୍ବାର ମଧ୍ୟ ସେ ଉଠିଛନ୍ତି ଜୀବନର ଝଡ଼ଝଞ୍ଜାକୁ ବୁଢ଼ା ଦେଖାଇ ଅକୁତୋଭୟ ଭାବରେ ଆଗେଇ ଚାଲିବା ପାଇଁ । ଦୁର୍ଭାଗ୍ୟ ନିଷ୍ପେଷିତ, ଭୂପତିତ କବି ଗାଇ ଉଠିଚନ୍ତି—

"ଧରଣୀ ମୋ ବେଦନା, ନିର୍ଭୁଝ ଲବେ ହେଲେ
ଦେଉ ସେ ଯେତେ ବାଧା ଦବ
ଉଠି ମୁଁ ନାହିଁ ପାରେ, ଉଠିବା ପାଇଁ ପ୍ରାଣେ
କିନ୍ତୁ ସେ ଆଶା ଅଭିନବ ।"

ଧନ ବା ମାନ ଦିଗରୁ ପତିତ ହେଲେହେଁ, ସାମାଜିକ ଭାବରେ ନଗଣ୍ୟ ହେଲେହେଁ, କବିଙ୍କର ଅନ୍ତର୍ନିହିତ ପ୍ରତିଭାର ଉତ୍ତପ-କଣା ତାଙ୍କୁ ଟେରୁଡ଼ ପରି ବରାବର ଉଡ଼େଇ ନେଇ ଚାଲିଛି ସୀମାହୀନ ଅନ୍ତରୀକ୍ଷକୁ, ଅମୃତର

ସନ୍ଧାନରେ । କବି ନିଜ ଦୁଃଖରେ ଅଭିଭୂତ ହୋଇ ଦୀର୍ଘଶ୍ୱାସ ପରିତ୍ୟାଗ କରିବା ସଙ୍ଗେ ସଙ୍ଗେ, ନିଜଗାଁ, ନିଜ ପ୍ରତିବେଶୀ, ନିଜ ଦେଶ ଓ ଶେଷରେ ସମଗ୍ର ମାନବ ଜାତିର ଦୁଃଖ ଦୂର କରିବା ପାଇଁ ଚିତ୍କାର କରି ଉଠିଛନ୍ତି 'ମୂଷାହାଡ଼' ଓ 'ପଧାନ ସାଇର ଦାମିଆ ଝିଅ ନେତ' ଏଇ ସର୍ବବ୍ୟାପୀ ମାନବିକ ଦୁଃଖର ମର୍ମନ୍ତୁଦ ପ୍ରତୀକ ହୋଇ ଠିଆ ହୋଇଛନ୍ତି, କବିଙ୍କ କବିତାରେ । ଯେଉଁ ପରସପ୍ରାଣ, ସାଥୀ, ପ୍ରତିବେଶୀ ଓ ମାନବର ଦୁଃଖରେ ଅଶ୍ରୁ ଜର୍ଜ୍ଜର ହୋଇ ପଡ଼ିଛୁ, ସେଇ ପୁଣି 'ଆହ୍ୱାନ'ରେ ଖୋର୍ଦ୍ଧା ପାଇକର ଉତ୍ତିଷ୍ଠିପ୍ର ଧମନୀ ଦେଇ ଉଗ୍ର ସମରାହ୍ୱାନ ଉଦ୍‌ଗାର କରିଛୁ, 'ଅଗ୍ନିଶଙ୍ଖ'ରେ ବଜ୍ରଦେବାକୁ ଯାଇଛୁ, ବିପ୍ଳବ ।

ତ୍ରିପାଠୀଙ୍କର ଏଇ ସବୁ କବିତା ଏତେ ସ୍ୱାଦ୍ୟ ଓ ଉପଭୋଗ୍ୟ ହୋଇଛି, କାରଣ ଏ ଗୁଡ଼ିକ ତାଙ୍କର ସମ୍ପୂର୍ଣ୍ଣ ନିଜର । ଏସବୁ ତାଙ୍କ ଦରିଦ୍ର କୁଟୀରର ଲକ୍ଷ୍ମୀଙ୍କ ନିଜ ହାତ ରନ୍ଧା ପଖାଳ ଭାତ ଶାଗ ଖରଡ଼ା । ଏଥିରେ ଉଧାର ଆଣି ପଞ୍ଚାମୃତ ଦେଖାଇବାର ବା ଗ୍ରେଭିଡ଼ ଲୁଚେଇ ଆଣି ନିଜକୁ ସମ୍ପତ୍ତିବାନ୍ ବୋଲି ପରିଚୟ ଦେବାର ଇତରତା ଆଦୌ ନାହିଁ । ସେ କୌଣସି ନୂତନ ସୃଷ୍ଟି କରିବାକୁ ଯାଇ ନାହାନ୍ତି ବା କୌଣସି ଯୁଗାବତାରର ଅନୁଗାମୀ ହୋଇ ସେହି ଅନୁଗମନକୁହିଁ ନିଜର ପରମ ମୌଳିକତା ବୋଲି ପ୍ରଚାର କରିବାକୁ ଚେଷ୍ଟା କରିନାହାନ୍ତି । ଏପରି 'ପ୍ରଗ୍ରେସିଭ୍' ପ୍ରଚେଷ୍ଟା କୃଷ୍ଣଚନ୍ଦ୍ରଙ୍କର ଦରକାର ନାହିଁ । ସେ ଖାଣ୍ଟି କବି ଏବଂ ଖାଣ୍ଟି ମନୁଷ୍ୟ । ସେ ଯାହା ଦେଖିଛନ୍ତି ଓ ଯାହା ଅନୁଭବ କରୁଛନ୍ତି, ତାହାହିଁ ପ୍ରକାଶ କରି ଦେଇଛନ୍ତି ଅପଣାର ନିଜସ୍ୱ ଭାଷାରେ । ସେ ସେଥିରେ ସିଦ୍ଧି ମଧ୍ୟ ଲାଭ କରିଛନ୍ତି ।' କାରଣ ତାଙ୍କର ମର୍ମଦହନ ହୋଇ ଉଠିଛି, ଅନ୍ୟ ସକଳର ମର୍ମଦହନ । ନାନା ଶ୍ରେଷ୍ଠ ୨ ଆପାଂକ୍ତେୟ ଅନୁଭବ, ଆଜି ତାଙ୍କ ରଚନାର ସାଦୃଶ୍ୟରେ ଓଡ଼ିଆ ସାହିତ୍ୟରେ ଅମର ସ୍ଥାୟିତ୍ୱ ଲାଭ କରିଗଲେଣି ।

ଏଇ ତରୁଣ କବିଙ୍କି ଅଭିବାଦନ କରି ମୁଁ ଆଜି ଆନନ୍ଦ ଅନୁଭବ କରୁଛି । ଲେଖିଯାଅ କବି, ଲେଖିଚାଲ । ଏ ଦେଶରେ ତମେ ଆଦର ସମ୍ମାନ

ପାଇବାର ଆଦୌ ଆଶା ରଖନ୍ତି । କୌଣସି ଦେଶରେ କବି ଓ ଲେଖକ ଏପରି ଲାଞ୍ଛିତ ନିର୍ଯାତିତ ଜୀବନ ଯାପନ କରନାହାନ୍ତି, ଯେପରି ଘଟି ଆସିଛି ଓଡ଼ିଶାରେ । କିନ୍ତୁ ଏ ଜାତିକୁ ଗଢ଼ି ଯାଇଛନ୍ତି ସେଇମାନେ । ହେ ଭାଗ୍ୟ ନିକ୍ଷେପିତ, ଦରିଦ୍ର ଅଜ୍ଞାତ କବି, ତମେ ସେଇ ଆନନ୍ଦକୁ ଲକ୍ଷ୍ୟ ରଖି ଦେଇ ଯାଅ ଯାହା ଜାତିକୁ ଦେବାର ।

( ୯ । ୪ । ୫୯ ତାରିଖ ଦୈନିକ 'ସମାଜ'ରୁ ଗୃହୀତ )



ସର୍ବଶୂନ୍ୟ କରୁ ମତେ ରଖ ଧରଣୀରେ
ବୁଡ଼ିଯିବ ନାହିଁ ନାଥ କେବେ ଉଷ୍ଣ ନୀରେ
ଚତୁର୍ଦ୍ଦିଗୁ ବାନ୍ଧି ଆଣ ପ୍ରଳୟ ସମୁଦ୍ର
ଭୟନାହିଁ ନିମିଷକେ ପାଲଟିବ ରୁଦ୍ର !
ଙ୍କା' ରକ୍ରମ ନୟନର ଇଙ୍ଗିତ ଭଙ୍ଗରେ
ଏକଇ ମୁହୂର୍ତ୍ତ ନାହିଁ ବଞ୍ଚିବ ସତରେ !!

—କୃଷ୍ଣଚନ୍ଦ୍ର ତ୍ରିପାଠୀ

# ସମ୍ରାଟ ଓ ଫକୀର

ଖିଲବିଶ୍ୱର ସ୍ରଷ୍ଟା ସେ ଦିନ ଦେଲେ ଯେ ଘୋଷଣାଟିଏ
"ସାରା ଧରଣୀର ସମ୍ରାଟ ପଦ ପାଇବାକୁ ଲୋଡ଼େ କିଏ ?
ଆଣିଥିବି କରେ ମୁକୁଟ ଗୋଟିଏ ଅତି ସୁନ୍ଦରତର,
ଶତ ମଣି ଶତ ମୁକ୍ତାର ତେଜେ ଦିଶୁଥିବ ଝଲମଲ !

'ସମ୍ରାଟ ହେବି ସମ୍ରାଟ ହେବି ମୁହିଁ ହେବି ସମ୍ରାଟ'—
ବୋଲି, ସମ୍ମୁଖେ ମୋର ଯେ, ଟେକିବ ଉଚେ ଯୁଗଳ ହାତ,
ମୁକୁଟ ମୁଁ ତାର ଶିରେ ଝଟ ଦେବି, ସେହି ହେବ ସମ୍ରାଟ,
ଧରଣୀର ପ୍ରତି ଅନ୍ତରୁ ସେହି ପାଉଥିବ ପ୍ରଣିପାତ ।

ଯାହା ସେ କହିବ, ତାହା ସେ ଚାହିଁବ ସକଳ ପାରିବ ପାଇ
ଧନ ଜନ ମାନ କେଉଁ ସମ୍ପଦୁ ଊଣା ସେ ହୋଇବ ନାହିଁ ।"
କେତେ ଦିନ ପରେ ନିଖିଳ ସ୍ରଷ୍ଟା ଦେଖିଲେ ଯେ ସମ୍ମୁଖେ
ମଣିଷର ମହାପାରାବାର କିବା ଚାହିଁଅଛି ଉତ୍ସୁକେ !

ପ୍ରତି ଅନ୍ତରେ ପୁଲକ-ଊର୍ମି-କଳ-ବେଣୁ ତୋଳି ଖେଳେ,
ପ୍ରତି ଅନ୍ତରେ ସମ୍ରାଟ ଆଶା କି ବିରାଟ ହୋଇ ଜଳେ !
ସ୍ରଷ୍ଟା ଯେବେ ସେ ଠିଆହେଲେ ଆସି ଏ ମହାଜନତା ଆଗେ
'ସମ୍ରାଟ ହେବି' 'ସମ୍ରାଟ ହେବି' ଖାଲି ଚିତ୍କାର ଜାଗେ !!

କାହା ଶିର ନାହିଁ ଅବନତ ହେଲା ସ୍ରଷ୍ଟା ଚରଣ ତଳେ,
ସମ୍ରାଟ ପଦ-ନିଶା-ଉନ୍ମତ୍ତ ଜନତା ଉଚ୍ଚସ୍ୱରେ—
ଚିତ୍କାର କରେ ଚିତ୍କାର କରେ 'ମୁହିଁ ହେବି ସମ୍ରାଟ' !
ସ୍ରଷ୍ଟା କହିଲେ ଜନତାର ଆଗେ ଉତ୍ତୋଳି ବେନି ହାତ—

# ଉତ୍ସ

"ଦୁଃଖର କଥା ଜାଣି ନଥିଲି ମୁଁ ସବୁ ହେବେ ସମ୍ରାଟ,
ଆଣିଚ ଜମା ମୁଁ ଗୋଟିଏ ମୁକୁଟ କାହିଁ ନଷ୍ଟଚ୍ଛି ବାଟ ?
ଆଉଦିନେ ସ୍ଥାର ନଷ୍ଟଚ୍ଛି ହେବ, ଆଜି ମୁଁ ଯାଉଚି ଚାଲି,
ଫକୀର ହେବାକୁ କଏସେ ଲୋଡ଼ୁଚି ଆସିବ ଏଥାନେ କାଲି ।

ଆଣିଥିବ ମୁହିଁ ଗୈରିକ ବାସ ପିନ୍ଧାଇ ଦେବି ତାରେ
ଶିର ପରେ ସେହୁ ଥିବ ଅବିଚଳ ଦୁଃଖ ଓ ହାହାକାରେ ।
ମୋର ଧରଣୀର ପ୍ରତି ଅନ୍ତରେ ଦେବ ଆନନ୍ଦ ବାଣୀ,
ଆପଣାରୁ ବଳି ଅତି ଆପଣାର ଦେଖିବ ସକଳ ପ୍ରାଣୀ,

ନଥିବ ତାହାର ପର ଓ ଆପଣା ନାହିଁଥିବ ଘରଦ୍ୱାର,
ଆକାଶ ଅବନୀ ସ୍ୱର୍ଗରୁ ବଳି ହେବ ତାର ପରିବାର ।"
ସେଦିନ ଆସିଲେ ସ୍ରଷ୍ଟା ହାତରେ ଗୈରିକ ବାସ ଧରି
ଦେଖିଲେ କେ ନାହିଁ, ଦୂରେ ଦିଶୁଚି କେ ଗୋଟିଏ ଚନ୍ଦ୍ରପରି,

ଚାଲିଲେ ସ୍ରଷ୍ଟା ଯେତେ ଆଗେ ଆଗେ ଉଜ୍ଜ୍ୱଳ ମୂରିଆଡ଼େ,
ମଣିଷ ଗୋଟିଏ ନାଚି ନାଚି ଆସେ ଆନନ୍ଦ-ମତୁଆଳ,
ସ୍ରଷ୍ଟା ଚରଣେ ନତ କରି ଶିର କହେ ବାର ବାର କରି,
"ଚିରକାଲ ମତେ ଏ ଫକୀର ବେଶେ ରଖିଥାଅ ନରହରି !

ତୁମରି ରାଇଜେ ଫକୀର ହୋଇ ମୁଁ କାଟି ନିଏ ମୋର କାଳ,
ମୋର ଯାହାଅଛି ମହାବିଶ୍ୱର ପାଇଁ ତାହା ଗୁରିଆଡ଼େ ।"
ସମ୍ରାଟ ଶିର ମୁକୁଟ ଗୋଟିକ ବାନ୍ଧି ତାହାର ଶିରେ,
ହସି ହସି ତାରେ ସ୍ରଷ୍ଟା କହିଲେ ମନ୍ତ୍ର ମଧୁର ଗୀରେ

"ତୁମେ ଧରଣୀର ସମ୍ରାଟ ଲାଗି ଏକଇ ମାତ୍ର ପୁଅ
ତୁମରି ଭିତରେ ବିକଶି ଉଠଇ ବିଶ୍ୱ ପ୍ରାଣର ସୁଅ ।"



# ଛିନ୍ନ

ଜୀବନର କେଉଁ ସୁଦୂର ଅତୀତେ,
ତୁମର ମୋହର ଦେଖା—ତାହା ପରେ ପରେ
ତୁମେ ମୁହିଁ କେ କାହାରେ ଦେଖିନାହେଁ ବାରେ,
ମୁଁ ଚାଲିଲି ମୋର ବାଟେ
ତୁମେ ଗଲ ସେ ଯେ କେଉଁ ଦୂରଦୂରାନ୍ତରେ !

ଏକାକୀ ବିହଗଟିଏ ଉଡ଼ି ଉଡ଼ି ଆସିବାର ପରି
ଦୂର ଦିଗ୍‌ବଳୟ ତଟୁ, ବହୁ ଯୁଗ ବହୁ ବର୍ଷ ପରେ
ତୁମେତ ଆସିଲ ଫେରି,
ପକ୍ଷ ଛିନ୍ନ ଦେହ କ୍ଷତ ଓ ବିକ୍ଷତ,
ପଚାରିଲ ସକରୁଣ କଣ୍ଠେ ଟିକିଏ ଖେଳାଇ ସ୍ମିତ
"ଚିହ୍ନି ପାରୁଛ ତ ?"
ତାଳୁରୁ ତଳିପା ଯାଏଁ ଚାହିଁଗଲି ଥର ଥର କରି
ସେଇ ସେ ଓଠର ହାସ, କଣ୍ଠର ସେ କଥା ପଦେ·
ମୋରେ ଚିହ୍ନି ରଖିବାକୁ ରହିଲାନି ବାକୀ କିଛି ହେଲେ,
ଦେଖିଗଲି ତୁମେ ମୋର ଅତ୍ୟନ୍ତ ନିକଟର
ଏତେ ଦିନ ଧରି ରହିଥିଲ କେଉଁ ଅନ୍ଧକାର-ବଳେ !

ସେଇ ଦେହ, ସେଇ ଦୀପ୍ତି, ମନର ସେ ସାହସ ଓ ବଳ
ସେଇ ଧୈର୍ଯ୍ୟ, ସେଇ ଦମ୍ଭ, ସେହି ପୁଣ୍ୟ ଗର୍ବ ଗୌରବ,
ସେଇ ଆଶା, ସେ ଆକାଂକ୍ଷା, ସେଇ ଅଭିଳାଷ,
କେଉଁଆଡ଼େ ହୋଇଛି ଉଭାନ,
ରହିଛି କେବଳ ଯାହା ଗୋଟିଏ ମୁମୂର୍ଷୁ ପିଣ୍ଡ
ଦୁଃଖ ଦୈନ୍ୟ ଅଭାବରେ ହୋଇ ଖଣ୍ଡ ଖଣ୍ଡ
ଶଧ୍ ଯେବେ ଚାହିଁଦଏ ବାରେ
ଉଠିବ ତରଙ୍ଗ ଯେହ୍ନେ ଅସୀମ ଦସ୍ଥାରେ;

# ଉତ୍ସ

ପଚାରିଲି ବିସ୍ମୟ ଓ ପୁଲକରେ ହୋଇ ଆନ୍ଦୋଳିତ
"କେଉଁଠୁ ଆସିଲ ତମେ ? କିପରି ଆସିଲ ?
ଏଇ ଦରିଦ୍ର କୁଟୀରେ,
କିପରି ଚିହ୍ନିଲ ବାଟ ? କିପରି ଜାଣିଲ
ମୁହିଁ ଅଛି ଅବା ନାହିଁ ?
ମୋରେ ତୁମେ ମନେ ରଖିବାର
ନଥିଲା ତ କିଛିହିଁ କାରଣ ;
ମୁଁ ତୁମରେ ରଖିଥିଲି ମନେ ଚିରଦିନ ପାଇଁ
ମୁହିଁ ଜାଣେ କାହିଁକି ମୁଁ
ରଖିଥିଲି ମନେ, ଜୀବନର ସୁଦୂର ଅତୀତରୁ
ସୁଦୀର୍ଘ ସମୟ ପରେ ଆଜି ଏତେ ଦିନେ !

ତୁମର ଐଶ୍ୱର୍ଯ୍ୟ ଥିଲା
ତାହା ସାଥେ ଥିଲା ବିଜଡ଼ିତ ହୋଇ
ତୁମର ସେ ଗୋଟିଏ ମୋହନଅନ୍ତର,
ଦୟା, ଦାନ, ତିତିକ୍ଷାରେ ହୋଇ ଢଳ ଢଳ,
ଆକାଶର ବାରିବିନ୍ଦୁ ପରି ପଡୁଥିଲା ଲଇଁ,
ଯେଉଁଠି ଗରଜୁଥିଲା ଶୁଷ୍କ ପ୍ରାଣ-ସ୍ୱାନ ମରୁ
ଆଁ କରି ରହୁଥିଲା ତାପ ଦଗ୍ଧ ମହୀ ।"

ମନେ ପଡ଼େ ଯେଉଁ ଦିନ ପାହାନ୍ତି-ସ୍ନାହାନ ସାରି
ଫେରୁଥିଲି କୁଟୀରେ ମୋହରି,
ତରୁଣ ବୟସେ ମୋର ଶତ ଶତ ସାଙ୍ଗ ସାଥୀ ମେଳେ
ପାଲଟି ନଥିଲି ପାରି,
ଓଦା ବସନଟି ମୋର—
ପିନ୍ଧି ଠିଆ ହୋଇଥିଲି
ନାହିଁଥିଲା ଲୁଗା ଖଣ୍ଡେ ହେଲେ ;

# ଉତ୍ସ

ମୋ ରେ ବଡ଼ ଲଗୁଥିଲା ମାନଭଞ୍ଜନ,
କାନ୍ଦ କାନ୍ଦ ହୋଇ,
ସେହି ଓଦା ଲୁଗା ଖଣ୍ଡି ପିନ୍ଧି
ବସୁଥିଲି ପଡ଼ି,
ତୁମେ ଗୃହିଁ, ପାରିଲନି ଗୃହିଁ ;
ହସି ହସି ଧଡ଼ପଡ଼ କରି,
ଲୁଗା ଖଣ୍ଡେ ମୋ ହାତେ ବଢାଇ ଦେଇ
କହିଲ ସଗର୍ବେ "ସାଥୀ ମୋର ! ବନ୍ଧୁ ମୋର !
କେତେ ବେଳ ଯାଏଁ ବସିଥିବ ଓଦା ପିନ୍ଧି ?
ନିଅ ସ୍ୱାକୁ ବ୍ୟବହାର କର ;
କରନାହିଁ ମନା
ମୁଁ କିଏ ! ତୁମର ନୁହେଁ ?
ଦିଅ ମୋରେ କ୍ଷମା ।"

ସେତେବେଳେ ରୋମାଞ୍ଚ ଉଠିଲା ମୋର ଏ ଦେହର ପ୍ରତି ଅବୟବ,
ବଗୃରିଲି "କିଏ ତୁମେ ? ଜୀବନର ଏ ସ୍ୱର୍ଣ୍ଣିମସ୍ୱପ୍ନେ
କେମନ୍ତେ ଦେଉଚ ଅଜାଡ଼ି
ହୃଦୟର ସବୁଟିକ ମଧୁ ଏଇ ଦରିଦ୍ର ପାତ୍ରରେ !
ମୁଁ ତୁମର କେଉଁ ଦିନ କେଉଁ ଶୁଭମୁହୂର୍ତ୍ତିରେ
ହୋଇଥିଲି ଏତେ ଆପଣାର ?
ମୋରେ ତୁମେ ପାରିଅଛ ବାନ୍ଧି
ଅନ୍ତରେ ଅନ୍ତର ଛନ୍ଦ ମୋହନସୂତ୍ରରେ ।"

ମୋ ଅନ୍ତରେ କେତେ କୋହ !
ମୋ ଆଖିରେ କେତେ ଅଶ୍ରୁ !
ଚତୁର୍ଦ୍ଦିଗେ ମୋର କେତେ ବାଧା ଓ ବନ୍ଧନ !
ମୋରେ ଯେବେ ଲାଗେ ନିଃସହାୟ

# ଉତ୍ସ

ମୋରେ ବୁଝିବାକୁ କଏ ଅଛୁ ଧରଣୀରେ ଆପଣାର ଜନ ?
ତୁମ ଅନ୍ତରର ଅମୃତ-କକ୍ଷରେ ମୋରେ ବନ୍ଦୀ କରି,
ବୋଲଦେଲ ଦେହେ ମନେ ମୋର ଯେ ଆନନ୍ଦ ଆମ୍ବ୍ର
ଜୀବନରେ ଏ ଟିକକ ଦବାନବା କଏ କରିପାରେ ?
ପ୍ରତିଦାନ ପାଇଁ ନୁହେ,
ଅଭିସନ୍ଧି ପାଇଁ ନୁହେ,
ନୁହେ ମାନପତ୍ର ପାଇଁ ;
ହୃଦସ୍ଥ ବସ୍ତ୍ର ହେଲେ
ଆପେ ଆପେ ଚତୁର୍ଦ୍ଦିଗେ ଯାଏ ବୋହି ବୋହି
ରଚି କବା କଲ-ବେଣୁ ତାନ
ସେଇ ତା'ର ଅମୃତର ଧ୍ୟାନ ।"
ତୁମେ ସେଇ ଅମୃତର ଗୋଟିଏ ମୋହନଧାରା
ଉଛୁଳି ଉଠୁଚ ପ୍ରତି ମୁହୂର୍ତ୍ତିରେ ନିଖିଳ ବିଶ୍ୱରେ ;
ପ୍ରାଣର ଏ ମୋହନ ଉଚ୍ଛ୍ୱାସ
କେଉଁଠୁ ଆଣିଲ ତମେ ?
ଏ ବିଶ୍ୱର କେଉଁ ଗନ୍ତାଘରୁ କଲ ଆହରଣ !
ତୁମରି ଚକ୍ଷୁରେ ଦେଇଚ କେ ବୋଳି
କବା ଅପରୂପ ମୋହନ ଅଞ୍ଜନ !

ଜୀବନର ସକଳ ମୁହୂର୍ତ୍ତି ଧରି,
ମୋ ଆଖିରେ କଏ ହେବ ନିତି ଚଳ ଚଳ,
ମରଣ-ଶଯ୍ୟନେ ଢଳି ପଡ଼ିଥିଲେ ଶୋଇ,
କାହାର ଆନନ୍ଦଭରା-ମୋହନ-ଶ୍ରୀକର
ମୋରେ ପାଶବ ଉଠାଇ
ଅମୃତପରଶ ବୋଳି ଦେହେ ମନେ ମୋର ;
ଦୁଃଖ କଷ୍ଟ ବାଧା ଗ୍ଳାନ ଅପମାନ ପରାଜୟ ପରାଭବ ସମସ୍ତ ଭିତରେ
କଏ ଆସି ଠିଆ ହେବ ?

# ଉତ୍ସ

ରପାଣିତ କର ମୋରେ ପ୍ରାଣର ଆଘାରେ
ହସି ହସି କଏ ଫେରିଯିବ ?
କାହାର ଅମୃତ ପରଶ ଟିକକ ଲାଗି
ଏ ଜୀବନ ଅନନ୍ତସମସ୍ତ ଧରି
ଚତୁର୍ଦ୍ଦିଗେ ରହିଅଛି ଚାହିଁ !
ଜୀବନର ଦୁଃଖ ? ସେ କି ଦୁଃଖ ?
କଏ ଯେବେ ନଥିଲ ଏ ଧରିତ୍ରୀ ଉପରେ
ମମତା-କମ୍ପିତ-ପ୍ରାଣେ
କାହା ପାଇଁ ରହିଅଛି କାହିଁ ?
ତୁମେ ସେ'ଦିନର ସେଇ ବନ୍ଧୁ ମୋର !
ତୁମରେ ମୁଁ ଚିହ୍ନିବିନି ? ତୁମରେ ମୁଁ ଜାଣିବିନି ?
ଚିହ୍ନିବି କାହାକୁ ଏଇ ଧରିତ୍ରୀ ଉପରେ ?
ତୁମର ସମସ୍ତ ଯାଇଚି କେଉଁ ମହାପାପରେ ଭୁଲି
ତୁମରି ସେ ଅନ୍ତରର ସ୍ୱର୍ଣ୍ଣ ଆଭା
ଉଙ୍କିମାରେ ବେଳେବେଳେ ତୁମରି ଭିତରେ !

ତୁମେ ଆଜି ପ୍ରାଣହୀନ ପରି ବୁଲୁଅଛ
ପୃଥିବୀ ବୁକୁରେ,
ମୁଠିଏ ଅନ୍ନର ସନ୍ଧାନ ପାଇଁ,
ଘର ଗଲା, ବନ୍ଧୁବାନ୍ଧବ ଗଲେ,
ମନର ସମସ୍ତ ସାଧନା ଓ ଆଶା ଆକାଙ୍‌କ୍ଷା ଗଲା,
ଚୀର ପରିହିତ ହୋଇ
ବୁଲୁଅଛ ଜରାଗ୍ରସ୍ତ ପଥିକଟି ପରି !
ଜୀବନର ଫୁଲ ଫୁଟିଉଠିବା କେଡ଼େ କଷ୍ଟକର !
ସମୁଦ୍ର ଲହରୀ ପରି ଯେବେ
ସହସ୍ର ସହସ୍ର ଘାତ ପ୍ରତିଘାତ ଆସି
ଜୀବନକୁ କରିଯାଏ ଅଥୟ ବିକଳ !!

## ଉସ୍ର

ତୁମେ ପାରିଲନି ଯାଇ
ଯେତେ ଦୂର ଯାଇଥାନ୍ତ ଧରଣୀ ଉପରେ,
ତୁମେ ରହିଗଲ ପଡ଼ି,
ପକ୍ଷଚ୍ଛିନ୍ନ ବିହଗଟି ପରି ;
ଅତୀତ ଯାଇଛି,
ଭବିଷ୍ୟତ ନାହିଁ କିଛି,
ଜୀବନର ସ୍ବରଆଡ଼ ହା-ହୁତାଶମୟ
ବେଦନାର ଏ ଅନନ୍ତ ସିନ୍ଧୁ ପାରିହୋଇ
ଦୂରେ ବହୁ ଦୂରେ ଯିବା
କେତେ ଦୁଃସାଧ
କେତେ ଦୁର୍ବସହ !!



# ଗୋଲିଦାସ

—୧—

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ସ୍ୱାର୍ଥ ବିଭବଭଗ୍ନ ଜୀବନର ଇତିହାସ !

କେଉଁ ପଲ୍ଲୀର ଶ୍ମଶାନ ବୁକେ ମିଳାଇ ଯାଇଚ ତମେ !
କେଉଁଠି ଜନମି କେଉଁଠି ଯାଇଚ ହଜି
. ତୁମକୁ କିଏସେ ମନେ ପକାଉନି ଜଣେ !
କୁଟୀର ତୁମର ଭାଙ୍ଗି ପଡ଼ିଚି—ରହିଅଛି ମାଟିଗଦା
ବିଲୁଆ ଭୁକୁଚି ସନ୍ଧ୍ୟା ଆସିଲେ ଗୃହଆଡ଼ ଖାଲ ପଦା
ଏ ମାଟି ଉପରେ ତୁମେ ଫୁଟିଥିଲ ସେ କେଉଁ ଅଜ୍ଞାତ ସ୍ଥଳେ
ଏଇଠି ବି ଦିନେ ଝଡ଼ି ପଡ଼ିଥିଲ ପୃଥିବୀ ଜାଣେନା ବାରେ ; .
ରହିଚି ତୁମର ଭଙ୍ଗା କାନ୍ଥ, ରହିଚି ପାହାଚ ଶିଳା
ଦେଖିଥିବେ କିଏ ତୁମ ଗଉରବ ତୁମ ତେଜସ୍ୱୀ ଲୀଳା !
ରହିଚି ଏ ନଈ ପୋଖରୀ ଗାଡ଼ିଆ ରହିଚି ଏ ବାଟ ଘାଟ
ଦେଖିଥିବେ କିଏ ନିଃସ୍ୱ କୁଟୀରେ ଜନମି କି ଭଳି ହୋଇଥିଲ ସମ୍ରାଟ !

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ ଜାଣିନି ତୁମରେ
ଶୁଣିଚି ତୁମର ସ୍ୱାର୍ଥ ବିଭବଭଗ୍ନ ଜୀବନର ଇତିହାସ !

—୨—

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ସ୍ୱାର୍ଥ ବିଭବଭଗ୍ନ ଜୀବନର ଇତିହାସ !

## ଉସ୍ର

କେଉଁ ଉଦ୍ଦାମ ତରୁଣ ଜୀବନେ କି ମହା ସାହସ ଧରି,
କଂସାଣ୍ଡି ନଈ ଅକାତ ପାଣିରେ ତୁମେ ଥିଲ ଡେଇଁ ପଡ଼ି !
ଶୁଣିଲ ଯେବେ ହେ ସକରୁଣ ଡ଼ାକ 'କିଏ ଅଛ ହୁଅ ସାହା !'
"ଭୟ ନାହିଁ ! ଭୟ ନାହିଁ ! ମୁହିଁ ଅଛି କହିଥିଲ ତୁମେ ସ୍ପର୍ଦ୍ଧାରେ ପିଟି ବାହା !"
ଭାସି ଯାଉଥିଲେ ସେ କେଉଁ ଗାଆଁର ଗୃହେଷ୍ଟି ମୂଲିଆ ଲୋକ
କିଏ ହେଉଥିଲା ଉବେଇ ଟୁବେଇ, କିଏ ପିଇଥିଲା ପାଣି ଢକ ଗୁର ଢୋକ ;
ଭଉଁରି ଗାତରେ କିଏ ପଡ଼ିଯାଇ ଜୀବନର ଆଶା ଛାଡ଼ି,
ଉପରକୁ ହାତ ଟେକି ରହିଥିଲା,
ଦୁଇକୂଳେ ଗୃହି ରହିଥିଲେ ନରନାରୀ ;
ଅସୀମ ଜନତା ଭିତରୁ ତୁମେ ହେ ଏକଇ ମାତ୍ର ଜଣେ,
ଗୋଟି ଗୋଟି କରି ଉଦ୍ଧାର କଲ
ନିଜ ଜୀବନରେ ମମତା ନରଖି କ୍ଷଣେ ;
ସଂଗ୍ରାମ ରତ ବନ୍ୟା ସୁଅର ତୋଡ଼େ ଗୃଲିଲ ଗୃଲିଲ ଦୂରେ
ଅରକ୍ଷ ସେଇ ଢନ ଗୃଶ ଜୀବନରେ ଫିଙ୍ଗି ପାରିଲ କୂଳେ !
ତୁମ ଦୁର୍ଧର୍ଷ ଜୀବନରେ ମୁହିଁ କରେ ଉଠେ ପ୍ରଣିପାତ !
ଶକ୍ତି ତୁମର, ସାହସ ତୁମର, ଧୈର୍ଯ୍ୟ ତୁମର,
ଜୀବନ ତୁମର କି ମହାନ୍ କି ବିରାଟ !

ଗୋଲଦାସ ! ଗୋଲଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବ ଭରା ଜୀବନର ଇତିହାସ !

— ୩ —

ଗୋଲଦାସ ! ଗୋଲଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

# ଉତ୍ସ

ସୋଳଗ୍ରି ପାହାଡ଼ ନିଘଞ୍ଚ ବଣେ କାଠ ହାଣୁଥିଲା ଶ୍ୟାମ
ଅରକ୍ଷ ସିଏ ବଣୁ କାଠ ହାଣି ବଞ୍ଚାଏ ତାର କୁଟୁମ୍ବ ଘର ପ୍ରାଣ !
ଠକ୍ ଠକ୍ ଠକ୍ ହାଣୁଅଛି କାଠ ଏକ ଲକ୍ଷ୍ୟେ ଏକ ମନେ
ଝାଳ ଗମ ଗମ ବୋହି ପଡୁଅଛି,
ପୋଛି ସେ ଦେଉଚି ହାତ ପିଠେ କ୍ଷଣେ କ୍ଷଣେ ;
ବେଳତ ହେଲଣି ଦ'ପହର ଦଶଘଡ଼ି,
ଆଉ ଘଡ଼ିକରେ ଫେରିବ କୁଟୀରେ ତା'ର,
ହାଇରେ ! ହାଇରେ ! ମହାବଳ ବାଘ ଆସି
ଶ୍ୟାମ ପରିଡ଼ାର ଜଙ୍ଘକୁ ଧରି, ଝିଙ୍କୁଚି ବାର ବାର ;
ଅରକ୍ଷ ଶ୍ୟାମ ତଳେ ଯାଇଅଛି ପଡ଼ି,
'ମରିଗଲି' 'ମରିଗଲି' ବୋଲି ଯାହା ଶୁଭୁଚି ଗୋଟିଏ ରଡ଼ି !
ଆଉ ଶୁଭୁ ନାହିଁ ସ୍ୱର ଶବ୍ଦ ତା' ; ସବୁ ଶୂନ୍‌ଶାନ୍‌ ତାହାପରେ ;
ତା ଆତୁର ରଡ଼ି ଚମକ ଆଣିଲା ତୁମରି ବକ୍ଷ ତଳେ !
ତୁମେ ତେଜସ୍ୱୀ ତୁମେ ହେ ସାହସୀ ପଲ୍ଲୀର ବୀରଯୁବା
କେଉଁ ବଣ ଉହାଡ଼ରେ ହାଣୁଥିଲ କାଠ ସଗର୍ବେ ହୋଇ ଉଭା !
ସେଇ ସେ ଦାଢ଼ୁଆ କଟୁରୀଟି ହାତେ ଧରି,
ଶିଳାରୁ ଶିଳାକୁ ବଣରୁ ବଣକୁ ଚଞ୍ଚଳ ଡେଇଁପଡ଼ି,
ଚାରିଆଡ଼େ ତୁମେ ବୁଲାଇ ନୟନ ଡୋଳା,
ଦେଖିଲ ଦେଖିଲ ଶ୍ୟାମ ପରିଡ଼ାରେ ଟେକି ନେଉଅଛି ବାଘ,
ଧାଇଁ ଯାଇ କବା ବିଦ୍ୟୁତ ଚଞ୍ଚଳେ, ବାଘର ବେକକୁ ଧରି ପକାଇଲ ଆଗ ;
ସେଇ କଟୁରୀରେ ଚୋଟ ଚୋଟ କରି ହାଣିଲ କୋଡ଼ିଏ ଚୋଟ ;
କ୍ଷତ ବିକ୍ଷତ ବାଘ ଢଳିଗଲା
ଶ୍ୟାମ ପରିଡ଼ାଟା ଗୋଟାକ ସାତଟା ହୋଇ, ଥରୁଅଛି ଛଟ ଛଟ !!

ସଚେତ କରାଇ ତା'ରେ
କାନ୍ଧରେ ଥୋଇ ଆଣିଲ ଗାଆଁକୁ
ଝର ଝର ଝର ଝରି ପଡୁଥାଏ ବନ
ତୁମରି ସେ ଦେହ ମୁଣ୍ଡର ଚାରିଆଡ଼େ !

# ଉତ୍ସ

ବଣ ତଳିଲାରୁ କଏ ହାଣୁଥିଲା କାଠ
ବଣ ତଡ଼େ ତଡ଼େ କଏ ବୁଲୁଥିଲେ ପଥିକ ସେ କେତେ
ସେ ଯେ' କେଉଁ ଦୂରବାଟ,
ବଳ କାମ କଏ କରୁଥିଲେ କାନ୍ଧି ସେ ବଣ ପାହାଡ଼ ତଳେ
ସବୁରି କାନରେ ପଶିଥିବ ତାର କଣ୍ଠ ଆତୁର ରଡ଼ି
ସଭିଏ ରହିଲେ ମୂକ ଶିଳାସମ ଶୁଣି ନଶୁଣିଲା ପରି,
ପଲ୍ଲୀର ବୀର ଦୁର୍ମଦ ଯୁବା ଗୋଲଦାସ ! ଗୋଲଦାସ !
ମୂକ ଓ ମଉନ ତୁମେ ପାରିଲନି ରହି, କାନ୍ଧେ କଟୁରି ବହି
କଭଲି ଧାଇଁଲ ଗୋଟିଏ ଜୀବନ ପାଇଁ, ଜୀବନ ଦେବାକୁ ଝାସ !
ତୁମରି ଗାଆଁର ତୁମରି ମାଟିର ତୁମ ଶୋଣିତର ଜଣେ,
ଜଳବଳ ହୋଇ ମରି ସେ ଯାଉଛି ପଡ଼ିଅଛି ଅଚେତନେ,
ତାହାରେ ଢଆଁଗି ଆଖି ବୁଜି ଦେଇ ଦୂରେ ଦୂରେ ଚାଲିଯିବା
ଏହା ତହୁଁ ବଳି ନିର୍ଲଜ ପ୍ରାଣ ଅଛି ଧରଣୀରେ କିବା ?
ବିପଦ ଭିତରେ ଆପଣାରେ ଝାସି ମରିଯିବା ପଛେ ଭଲ
ବିପଦ ଭିତରେ ଜଣେ ବୁଡ଼ି ରହି ହେଉଥିବା କଲବଲ—
ଏ ଟିକକ ଦେଖି ବଞ୍ଚି ରହିବା ଆହୁରି କଷ୍ଟକର !
ବିଚାରିଲ ମନେ ମନେ, "ମରେ ବା ବଞ୍ଚେ କିଛି ଯାଏ ଆସେ ନାହିଁ,
ଜୀବନ ଆସିନି ମରିଯିବା ଅବା ବଞ୍ଚିବା ଲାଗି ଖାଲି,
ଆସିଛି ଧରାର କଲ୍ୟାଣ ପାଇଁ ଲାଗିବାକୁ ପ୍ରତିକ୍ଷଣେ,
ସେ ଟିକକ ଯେବେ ନ ହୋଇ ପାରିଲା
ଏ ଜୀବନେ ଅଛି କିବା ପୌରୁଷ କହ ?"
ଜୀବନ ତୁମର ହେଲା ଅତି ଦୁଃସହ !
ବିଦ୍ୟୁତ ପରି ଚମକି ଉଠିଲ କଟୁରି ଉର୍ଦ୍ଧ୍ୱେ ଟେକି
ସଂଗ୍ରାମ କରି ବିଜନ ପାହାଡ଼ ଖୋଳେ
ଏକା ଏକା କେହି ନାହାନ୍ତି ତୁମ ତୁଲେ,
ଶ୍ୟାମ ପଟଡ଼ାରେ ଝିଙ୍କି ଆଣିଲ

# ଉତ୍ସ

ମରଣ ମୁହଁରୁ ତୁମେ ବୀର ବଳୁଆର !
ତୁମେ ଯା ପାରିଚ କର,
କା ବୁକୁରେ ଜଳେ ଅଗ୍ନି ଏ ଭଳି
ମରଣର ତୁଲେ ସଂଗ୍ରାମ କରି
ବଜାଇ ପାରିବ ଜୟ ଦୁନ୍ଦୁଭି
ଆକାଶ ପବନ କମ୍ପାଇ ଗୃରଆଡ଼ି !!

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନ ତୁମରେ, ଜାଣିନ ତୁମରେ
ଶୁଣିଚ ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

— ୪ —

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନ ତୁମରେ, ଜାଣିନ ତୁମରେ
ଶୁଣିଚ ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

ଖୋର୍ଦ୍ଧା ତାଲୁକା ମାଜିଷ୍ଟ୍ରେଟର ଦେଖିଲ ଗୋଟିଏ ଅତି ଉଦଣ୍ଡ ଘୋଡ଼ା,
ବରୁଣୀ ପାହାଡ଼ ତଳେ ଚରୁଅଛି
ପାଦରେ ତାହାର ଲୁହା ଜଞ୍ଜୀର ନିବଡ଼େ ହୋଇଚ ଭିଡ଼ା ;
ପଗ୍ରୁର ବୁଝିଲ ଆଜଯାଏଁ କେହି
ଚଢ଼ି ପାରୁନାହିଁ ସେହି ସେ ଘୋଡ଼ାର ପୀଠେ
ଏକଇ ଲମ୍ଫେ ଚଢ଼ି ସେ ଘୋଡ଼ାରେ
କଦମ୍ କଦମ୍ ଚଳିଲ ଚଳିଲ ପାହାଡ଼ର ଆରପଟେ ;
ପବନ ପରିଏ ଚଳୁଅଛି ଘୋଡ଼ା ଡେଇଁ ବିଲ ପଦା ବନ
କିଏ ସେ ବସିଚି ଏଡ଼େ ବଳୁଆର ଆଚମ୍ବିତ ସେ ଚହଦରେ ପୁରଜନ
ମାଜିଷ୍ଟ୍ରେଟ ସେ ବିସ୍ମିତ ହୋଇ ରହିଲେ ଘଡ଼ିଏ ଚାହିଁ
ଦୁର୍ଦ୍ଦଣ୍ଡ ଏ ଘୋଡ଼ାର ପିଠିରେ କିଏସେ ବସିଚ
ଭୟ ବା ଭ୍ରାନ୍ତି ଟିକିଏ ତାହାର ନାହିଁ !

# ଉତ୍ସ

ସହର ତମାମ ଟପ ଟପ ଘୋଡ଼ା ଗୁଳି
ଫେରାଇ ଆଣିଲ ଟିକଏ ଆପୁଣ୍ଡ଼ି ଦେଇ ;
ସହର ତମାମ ପଡ଼ିଗଲା ହୁରି 'ଗୋଲ୍‌ଦାସ ! ଗୋଲ୍‌ଦାସ !
ଅଛି ଅମାନିଆ ଘୋଡ଼ାରେ କପରି ମନାଇ ପାରିଛି ସେଇ' ;
ସାହେବ ତୁମର କାର୍ଯ୍ୟ ବିଭବ ସାହସ ଦମ୍ଭ ଦେଖି,
ଆପଣା ହାତରେ ଗଉରବ କରି କେତୋଟି ଟଙ୍କା ଦେଲେ ଉପହାର ଟେକି ;
ସାହେବରେ ତୁମେ ଦରଖଣ୍ଡିଆ ହିନ୍ଦୀରେ ପରି କହିଲ ଗୋଟିଏ କଥା
"ସାହେବ, ମୋହର ଟଙ୍କାତ ଲୋଡ଼ାନାହିଁ
ତୁମେ ଯେ ବୁଝିଲ ଏ ଦେଶେ ଛନ୍ତି ବୀର ବଳିଆର
ସେଇତକ ମୋର ସକଳ ସାର୍ଥକତା !"
ଗୋରା ସାହେବର ପ୍ରତି ଅବୟବେ ପ୍ରେମ ଝାଙ୍କୁରି ଉଠି
ଅଧରେ ଗୋଟିଏ ମୋହନ ହାସ୍ୟ ସୋହାଗେ ଅଇଲା ଫୁଟି ;
ଗୁରୁ ଗଉରବେ ତୁମରି ମଥାରେ ବୁଲାଇ ଆପଣା କର
ବିନମ୍ର ସ୍ୱରେ କହିଲେ ତୁମରେ "ଗୋଲ୍‌ଦାସ ! ଗୋଲ୍‌ଦାସ !
ସେଇ ବୀର, ଯିଏ ଧନ ସମ୍ପଦ ଉପରେ ନରଖି ମାୟା
ଦେଶର ଜାତିର ଗଉରବ ପାଇଁ ଗୁଳିଥାଏ ରଖି ଅମୃତ ଅଭିଳାଷ !"

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ ଜାଣିନି ତୁମରେ
ଶୁଣିଛି ତୁମରି କାର୍ଯ୍ୟ ବିଭବଭରା ଜୀବନର ଇତିହାସ !

—*—

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଛି ତୁମରି କାର୍ଯ୍ୟବିଭବ ଭରା ଜୀବନର ଇତିହାସ !
କେଉଁ ଶତାବ୍ଦି ଅନ୍ଧାର ତଳେ, କେଉଁ ପଲ୍ଲୀର କୁଟୀରେ ବିକଶି ତମେ
କେଉଁଠି ନଭିଲ, ଆପଣା ଟିକିକ ଫୁଟାଇ ଫୁଟାଇ

# ଉତ୍ସ

କିଏତ ଜାଣିନି ଦୁନିଆରେ ଆଜି ଜଣେ ;
ଦେହ ଓ ମନର ଶକ୍ତି ସାଧନା ଅମିତ ସାହସ ବଳ
ଦେଇ ଚାଲିଗଲ ପଲ୍ଲୀ-ବକ୍ଷରେ ଫୁଟାଇ କି ଅବା କନକର ଶତଦଳ
ଇଚ୍ଛା କରନି କିଏସେ ତୁମକୁ ଜାଣୁ
ଫୁଟି ଉଠୁ ତୁମ ଗଉରବ ଚାରିଆଡ଼େ,
ଇଚ୍ଛା କରନି ବଞ୍ଚି ରହିବା ପାଇଁ
ସ୍ମୃତି ସ୍ତମ୍ଭର ଫଳକେ ବିରାଜି ବଡ଼ ବଡ଼ ଅକ୍ଷର ସମ୍ଭାରେ ।
କଣ ତୁମର ଧ୍ୱଂସ ହୋଇଚି, ଚିହ୍ନ ତୁମର ନାହିଁ,
କେଉଁ ବିସ୍ମୃତି-କଳା ଅନ୍ଧାରେ ଲୁଚି ଯାଇଅଛ କାହିଁ !
ତୁମର ବୀର୍ଯ୍ୟ ତୁମର ଶୌର୍ଯ୍ୟ ତୁମର ସାହସ ବଳ
ବଞ୍ଚି ରହିଚି ସୃଷ୍ଟିରେ ରଚି ଜୀବନ ଉଜ୍ଜ୍ୱଳ ;
ନିଖିଳ ଦୁନିଆ କୋଟି ସଭ୍ରମେ
ଚିରଦିନ ପାଇଁ ରହିବ ସବୁରେ ଚିହ୍ନି,
ଜୀବନ ଯେଉଁଠି ଜୀବନ ଆଣିଚି କେବଳ ଜୀବନ ପାଇଁ !

ଗୋଲ୍‌ଦାସ ! ଗୋଲ୍‌ଦାସ !
ଦେଖିନି ତୁମରେ ଜାଣିନି ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !!

—o—

# ଆଦେଶ

— ୧ —

ଲେଖିଲ ମୁଁ ଥର ଥର କରି ଲକ୍ଷ ଥର
ଯିବନି ସୁଦୂରେ ଆଉ, ମତେ ସ୍ଥାନାନ୍ତର
କର ତମେ ସନ୍ନିକଟେ, ମୋର ପ୍ରିୟମାଟି
ଯା' ବନ୍ଧନ ଜନ୍ମେ ଜନ୍ମେ ପାରିବନି କାଟି ।
ପାହାଡ଼ ପ୍ରାନ୍ତର ଶ୍ୟାମ ଗଛ ପତ୍ରମାଳ
କେତେ ବନ୍ଧୁ ପରିଚିତ, ପ୍ରିୟ ଆପଣାର
ସକଳର ପୁଣ୍ୟସ୍ମୃତି ମୋ ଅନ୍ତର ତଳେ
ଚିରଦିନ ସ୍ଥଳାସ୍ଥିତ, ଏତେ ଦୂରସ୍ଥରେ
ପାରିବନି ରହି ଆଉ, ଆତ୍ମୀୟ ସ୍ୱଜନ-
ସଭିଙ୍କଠୁ ଛିନ୍ନ ହୋଇ, ମହାମରୁସମ—
ନିଃସଙ୍ଗ ଜୀବନ-ଯାତ୍ରା ବଡ଼ କଷ୍ଟକର ;
ତଥାପି ଲେଖିଲ "ଯାଅ ସୁଦୂରେ ସତ୍ୱର
ଆଦେଶ ବଦଳିବନି !" କି ବୁଝିଲ ମତେ ?
ହାକିମ ଗୁଡ଼ାକ କ୍ରୂର ଜାଲୁଆର ସତେ !!

— ୨ —

କି ମହା ଆଦେଶ ତୁମେ କରିଅଛ ଜାରି
ନ ମାନିଲେ କାଟିଦେବ ମୋ ଜାଗିରି ବାଡ଼ି
ପଳାତକ ହୋଇ ମୁହିଁ ବୁଲିଯିବି କାହିଁ
ମୋ ଲାଗି ଏ ଧରିତ୍ରୀବକ୍ଷେ ସ୍ଥାନ ଯେଣେ ନାହିଁ :
ମରି ପଡ଼ିଥିଲେ ମଧ୍ୟ ଘୁସୁରି ଘୁସୁରି
ତୁମରି ଆଦେଶେ ଯିବି ଶହେ କୋଶ ଦୂରି,
ତୁମେ ବିଚାରିଚ, ମୁହିଁ ଜନ୍ତୁଟିଏ କହୋ ?

# ଉତ୍ସ

ତୁମେ ଏକା ପ୍ରଭୁ ମୋର ଖାଇବାକୁ ଦିଅ ;
ତୁମେ ବା ରଖିଚ ମୋତେ ବେକେ ବାନ୍ଧ ପଘା
ସନ୍ଧି ଓଷ୍ଟାରିବ, ଯିବି ମୁଁ ଯେ ଅଗା ବଗା
ମୁଁ ଯେହ୍ନେ ଧରାରେ ନୁହେ ଗୋଟିଏ ଜୀବନ
ମୁଁ କାହା ବୁକୁରୁ-ବୁହା ଘୃଣ୍ୟ ହେସ୍ତୁ ଜନ ;
ଏ ମହା ଆସ୍ପର୍ଦ୍ଧା ତୁମେ କରିଚ କପାଇଁ ?
କେତେ ଶ୍ରେଷ୍ଠ ହେଲେ ଜଣେ ଏହା କରେ ଯାଇ !!

—୩—

ତୁମେ ଯେ ବିଦେଶୁ ଫେରି, ପାଇଚ ଗୃକଶ୍ମି
ବଡ଼ ବଡ଼ ପାହ୍ୟାଙ୍କର ଗୋଡ଼ ହାତ ଧରି ;
କାହା ଦ୍ୱାରେ ହୋଇଅଛ ଠିଆ, ହାତ ପାତି,
କାହିଁ ତା' କଲନା କେତେ ଦିନ କେତେ ରାତି !
କାହା ଝିଅ ବିଭା ବେଳେ ସୁବର୍ଣ୍ଣର ହାର,
ଦେଇଚ ପାଇବା ପାଇଁ ଅନୁଗ୍ରହ ତାର ।
କାହାଠୁ ଭର୍ତ୍ସନା ଖାଇ, ଖାଇ ଯୋତା ମାଡ଼
ଧରିଚ ଯାବୁଡ଼ି ତାର ପଦ୍ମର ଯୁଗଳ ;
ପଠାଇଚ ବିଶା ବିଶା ଝିଇଙ୍ଗା, କଙ୍କଡ଼ା,
ରାଗ ତାର ଉପଶମ କରିବାକୁ ପରା !
ଦାମିକା ଜର୍ଜେଟ ଶାଢ଼ୀ ଦେଇଅଛ କା'ରେ
ମାଇପ ଆଡ଼ୁ ତା' ସ୍ୱାର୍ଥ ହାସଲ ଆଶାରେ ;
ଏ ସବୁ ଭିତରେ ବଢ଼ି ହୋଇଅଛ ବଡ଼ !
କି ଅବା ବିରାଟ ଦ୍ରୁମ ନାଇଁ ପତ୍ର କଡ଼ !

— ୪ —

କରି କରି ଖାଲି ନକୁହୁଆ ଆଚରଣ,
ପାଇଚ ଜୀବନେ ସିଏ ବିରାଟ ଆସନ,

# ଭସ୍ମ

କି ଶିଖି ସମ୍ପଦ ତା’ଠୁଁ ପାରିବ ବା ପାଇ ?
ଥିଲେ ସ୍ୱର୍ଣ୍ଣ ପାତ୍ରେ ବିଷ୍ଠା ଗନ୍ଧାଇବ ନାହିଁ ?
ଅଫିସରେ ରଖିଅଛ ସେ ଯେଉଁ କିରାଣି
ତା’ ମୁଣ୍ଡରେ ଦୁନିଆର ସବୁ ସଇତାନି !
ଆଁ କରି ବସିଚି ସେ ଉଣ୍ଡି ଉଣ୍ଡି ଓର
ପ୍ରତିଦିନ ପଡ଼େ ପେଟେ ବାଳହା ଶଢ଼ିଲ !
ତୁମେ ତହୁଁ ପାଉଥିବ ଭାଗ କିଛୁ କିଛୁ
ଏ ଭଲ କାହିଁକି ଜଣେ ରଖିଥାନ୍ତି ବାଛୁ ?
ତାହାକୁ ଅନ୍ତର କଲେ ତୁମର ଅନ୍ତର
ପରସ୍ତ ନ ପାଇ ହେବ ଅସ୍ଥିର ବିକଳ ;
ସେଥିଲାଗି ତୁମେ ତାରେ ରଖିଚ ଯାଇତ ;
ଥାନ କେ’ ଦିଅନ୍ତା ତନ୍ତ୍ର ପାଣ୍ଠୋଇରେ ପିଟି ;

— ୫ —

ତୁମ ଆଦେଶର ହେବନାହିଁ ରୂପାନ୍ତର ,
ବେଦବାଣୀ ଠାରୁ ବଳି ଅକ୍ଷର ଯେ ବଡ଼ !!
କାଲିର କୁକୁର ଆଜି ପାଲଟିଚି ହାତୀ,
ପନ୍ଦର ଦେଖାଅ ବାର ହାତ ଠେଲି ଗୁତ !
ଭିତରେ ଯାହାର ନାହିଁ ମାଲ୍ କା ମସଲା
ବାହାରକୁ ତା’ ଛଇଛା ଖୋଲପଣ ପରା !
ଏ ଛଇ ଛଟକ ଏଇ ଧଡ଼କ ଭିତରେ ,
ମୁଖର ବିକଟ ଭଙ୍ଗୀ କଲମ ହାତରେ,
ବିଶ୍ୱରତ ଯାହା ଇଚ୍ଛା ତାହା ଦେବ କରି,
ତୁମକୁ ମାନିବେ ସର୍ବେ ଦେବତାରୁ ବଳି ;
ଧନୁଲି ପତରେ ଯା’ରେ ନ ମିଳିବ ଖ୍ୟାତ,
କେ, ଜାଣି ସେ ହେଲେ ହେବ ତୁମ ଅନୁଗତ ;

# ଉତ୍ତର

ହେଲେ ମଧ୍ୟ ଅନୁଗତ ହେଉଥିବ ଖାଲି
'ଏ ଲୋକଟା ପାଶୁ ଦୂରେ ଯାଆନ୍ତୁ ବାହାରେ ।'

— ୬ —

ନିଜ ଦୋଷ ଦୁର୍ବଳତା ଘୁଞ୍ଚାଇବା ଲାଗି,
ଦୁନିଆରେ ସାଜି ସାଧୁ, ସନ୍ଥ ବଇରାଗୀ,
କେତେ ମିଛ ଯୋଡ଼ି ଯାଞ୍ଚି କଲଙ୍କ ଆନରେ
ତୁମେ ସବୁ ଦେଇପାର; ତୁମର ପ୍ରାଣରେ
ସ୍ଥିର ରହିଅଛି ଖାଲି ବିଷର ଭଣ୍ଡାର,
ଲାଗେନି ଟିକିଏ ଦ୍ୱିଧା ନିମିଷେ ଉଦ୍‌ଗାର
କରିପାର । ତୁମେ ସବୁ ଶଠ ସମ୍ଭ୍ରାନ
ତୁମର ଏ ବ୍ୟବସାୟ ଜୀବନ ତମାମ ;
ଆଲୋକକୁ କରିପାର ତୁମେ ଅନ୍ଧକାର,
ବସନ୍ତରେ ଆଣିପାର ଗ୍ରୀଷ୍ମର ସଞ୍ଚାର,
ନାହିଁ କେ' କରିବା ପାଇଁ ପ୍ରତିବାଦ ତାର,
ତୁମରି କଥାରେ କିଏ ହେଉ ନାରଖାର
କିବା ତବ ଆସେ ଯାଏ ? ସମ୍ଭ୍ରାନ ହାତେ
ଷର୍ଟ ଦାୟିତ୍ୱ ଦେଲେ ସବୁ ତୋଟି କାଟେ !

— ୭ —

ଦରିଦ୍ର କୁଟୀରେ ମୋର ବସିଚି ଏକାକୀ
ଗୃହିଣୀ ବାନ୍ଧବୀ ନାହିଁ, ବନ୍ଧୁଜନେ ଡାକି —
ପଚାରନ୍ତି, 'ଆସିଲା କି କେଉଁଠୁ ଆଦେଶ
ଯିବାପାଇଁ', ଓଠ ଫେଇ ଦିଏ ମୁଁ ନିର୍ଦ୍ଦେଶ
"ଆସିଚି ଆସୁଚି ପୁଣି ଆସିବ ସତ୍ୱର
ଯିବାକୁ ସୁଦୂର ଭୂଇଁ, ଯହିଁ ମୋ ଅନ୍ତର

ଉତ୍ସ

ଯିବା ପାଇଁ ଖୋଜ ନୁହେ, କେତେ ଜଣଙ୍କର
କୂଟ ମନ୍ତ୍ରଣାରେ ତହିଁ ମୋର ସ୍ଥାନାନ୍ତର—
କରା ହୋଇଅଛି, ମୋରେ ଦେବାକୁ ବଞ୍ଚନା,
ଯିବନି ମୁଁ କଦାଚନ, ଅଗ୍ନିର ଯାତନା—
ଭିତରେ ମୁଁ ଦଗ୍ଧ ହୋଇ, ପାଉଁଶ ଅଙ୍ଗାର,
ପାଲଟିଣ ରହେ ପଛେ ସୀମାହୀନ କାଳ—
ଅନାଗ୍ରର ପାଦ ତଳେ ପେଡ଼ି ପେଡ଼ି ହୋଇ
ସୁଖ ପାଇବାଠୁ ଭଲ ମରିଯିବା ଏଇ !!"

—୮—

ଅନ୍ୟକୁ ବିପନ୍ନ କରି, କରି ମୂଳ ପୋଛ
ଜୀବନରେ ପାଏ ଯେଉଁ ଆନନ୍ଦ ସର୍ବୋଚ୍ଚ
ପଶୁର ଆନନ୍ଦ ତାହା, ସେଇଟିକୁ ଧରି,
ଯାର ଗର୍ବ ଗଉରବ, ତାହା ତହୁଁ ବଳି
ନରାଧମ ନାହିଁ କେହି; ଧରିତ୍ରୀ ଉପରେ
ଅନ୍ୟର ନକରି କ୍ଷତ, ନିଜ ବାହୁବଳେ,
ନିଜ ପାଇଁ କାମ କରି, ଯେ ଆନନ୍ଦ ପାଏ,
ଅନ୍ୟ ପାଇଁ ଯା' ଅନ୍ତର ମୂକ ଜଡ଼ ପ୍ରାୟେ—
ରହିଥାଏ ଉଦାସୀନ, ସେ ଆନନ୍ଦଟିକ,—
ସାଧାରଣ, ନାହିଁ ତହିଁ ଗୌରବ ଅଧିକ
ଅକୂଳ ସମୁଦ୍ରେ ଭାସିଗଲା ବେଳେ ଜଣେ
ତା' ଲାଗି ନିଜକୁ ଝାସି ଅକୁଣ୍ଠିତ ମନେ
ଯେ ତହୁଁ ଆନନ୍ଦ ପାଏ, ସେଇ ଶ୍ରେଷ୍ଠତମ
କବି ମୁଁ, ସେ ଆନନ୍ଦରେ କରଇ ବନ୍ଦନ !

—୯—

"ଏତେ ଟଙ୍କା କ୍ଷତ କରି କାହିଁପାଇଁ ଘରେ
ବସିଅଛ ଠୁଙ୍କା ହୋଇ ପରୀରନ୍ଧ ନରେ

# ଉଗ୍ର

ରହିବ ତୁମର କଥା ? ତୁମ ଅଧିକାଂଶ—
ଆଦେଶ ହଜାଇ ଯିବ ଶୂନ୍ୟେ ଶୂନ୍ୟେ ଖାଲି
କାହିଁକି ମାତୁଛ ଏଥି ? ଏ ତୁମ ବୋକାମି
ବସି ବସି ହୋଇଯିବ ଶେଷରେ ଅକାମି ।”
“ଏକି ଦୁର୍ବିଗ୍ରର ତବ ? ହେ ମୂର୍ଖ ଜନତା !
ମୁଣ୍ଡପାତ ସହିନେବା ସବୁ ବର୍ବରତା—
ତହୁଁ ବଳି ଅପୌରୁଷ କିବା ଅଛି କହ ?
ଦୁଃଖ ନାହିଁ ପାଏ ପଛେ ଶେଷେ ପରାଜୟ
ପ୍ରତିରୋଧ କରିବାରେ ଗୌରବ ମୋହର
ବିକ୍ଷତ ହୋଇ ମୁଁ ପଡ଼ିଯାଏଁ ଧରାତଳ ।”
ଟଙ୍କାର ଲଭ ବା ଷଣ୍ଢ ଭିତରେ ଜୀବନ
ମୁଁ ଦେଖିନି ଦେଖି ପାରିବିନି କଦାଚନ ।

— ୧୦ —

ବିଚାରିଲି କେତେବାର ଦେବି ମୁଁ ଇସ୍ତଫା
ଶତ ବନ୍ଧୁଜନେ ମନା କରିଦେଲେ ସଫା
“ଦେଲେ କି ସେ ଫେରାଇବେ ? ଅଭିମାନ କରି—
ଦେଇଛନ୍ତି, ବିଚାରିବେ ? ହୃଦେ ଦୟା ଭରି—
କି ରବେକି ସୁବିଚାର ? ସେହି ନିଷ୍ଠୁରତା
ଭିତରୁ ବାହାରୁ କହେ ଚିରନ୍ତନ କଥା
ତହିଁ ସବୁ ଅଭିମାନ ନିଷ୍ଫଳ ପ୍ରୟାସ
ଫଳ ଖାଲି ପାଇବାର ତୀବ୍ର ଉପହାସ !
ଯେ ଅଯୋଗ୍ୟ ଅପଦାର୍ଥ କଠୋର ପାଷାଣ
ତା’ ପାଖରେ କରିବାର ଅଶ୍ରୁ ଅଭିମାନ—
ସାଜେନା ସାଜେନା କବି ନିରସ୍ତ ରହ ହେ !
କବିତା ନିର୍ଝର କଣ ସବୁଠାରେ ବହେ ?

ସବୁଠାରେ ବନ୍ଧୁଥିଲେ କବିତା ନିର୍ଝର
ବକ୍ଷରେ ପ୍ରୁଥିଙ୍କା ହେଉ ନଥାନ୍ତା ଜର୍ଜର !"

—୧୧—

କା' ଭୁଲେ କରିବ ଦେଖା ? କରିବ କମିାଇଁ ?
ଯେ ଦେଖାରେ ଲଞ୍ଛନା ଓ ପରାଭବ ପାଇ
କେବଳ ଫେରିବ ଗୃହେ ପୋଛୁ ପୋଛୁ ଲୁହ
ମୋ ପକ୍ଷେ ସେ କେଡେ ଆହା ଦୁର୍ବିସହ ନୁହ ?
ଯେ' ଦେଖାରେ ଅମୃତର ବାଣୀ ନାହିଁ ଫୁଟେ,
ଯେ ଦେଖାରେ ସବୁ ଦୁଃଖ ନିମିଷେ ନ ତୁଟେ ,
ଯେ ଦେଖାରେ ଏକ ଆତ୍ମା ଅପର ଆତ୍ମାର—
ଭୁଲେ ମିଶି ହୋଇଯାଏ ନାହିଁ ଏକାକାର,
ସେଠି କଣ କଥା ଭାଷା ? ସେଠିକଣ ଦେଖା ?
ବିରାଟ ପ୍ରାଚୀର ପରି ଯହିଁ ସୀମାରେଖା—
ଯୁଗ ଯୁଗ ଧରି ନିତ୍ୟ ହୋଇଥାଏ ଠିଆ
କି ଶିକ୍ଷା ପାଇବ ତହିଁ ବଦଳିତ ହିଆ ?
ଅନ୍ତର ଏ ଦେହ ମନ ହେବ ଛଟପଟ
କାହିଁକି ଆସିଲି ବୋଲି ଚକ୍ଷେ ନଫୁଟଟ ?

—୧୨—

ଫେରିଲି ସେ' ଦିନ ବନ୍ଧୁ ! ନିର୍ବାଣ ଅନ୍ତରେ
ମୋ ପାଇଁକି କାହିଁ କହ କାହାର ବକ୍ଷରେ
ଫୁଟିବ ତରଙ୍ଗ ଲବେ ? ଉପରେ ଉପରେ
ହଁସି ସବୁ କରିଦେଲେ, ମୁଁ ଯେତେ ସତରେ
ସେ ସବୁ ପାରୁନି ଜାଣି, ଆସିଲି ମୁଁ ଫେରି
ଦୀର୍ଘ ପଥ, ମୁହଁ ପଡ଼ିଯାଇଥାଏ ନେଳି,
ବଡ଼ ବ୍ୟସ୍ତ ଲାଗୁଥାଏ, ଭାଳୁଥାଏ ମନେ
ନିଜ ଦୁଃଖ ଧରଣୀରେ କାହିଁ ଅନ୍ୟ ଜଣେ,

ଏତେ ବା କରିବ ଚନ୍ଦ୍ର ? କେତେ ଆପଣାର
ହେଲେ ତା'ର ନେତ୍ର ପ୍ରାନ୍ତୁ ଅଶ୍ରୁ ଧାର ଧାର
ଭୂତଳେ ପଡ଼ିବ ଖସି ! ମାତୃ ହୃଦ ପରି
ପୃଥିବୀର ବେଦନାରେ ଉଠିବ ତରଙ୍ଗ,
ସେ ଭଳି ଜୀବନ କାହିଁ ? ସେ ଭଳି ଜୀବନ
ଅଶ୍ରୁଳ ନୟନେ କରୁଚି ମୁଁ ଅନ୍ୱେଷଣ !

—୧୩—

ଅସ୍ଥିର ଚଞ୍ଚଳ ଆଜି ଏ ଅନ୍ତର ମନ
ନାହିଁ କାହା କଷାଘାତ ନିଦାରୁଣ ତମ !
ଧରଣୀରେ କରିଚି ମୁଁ କାହାର ବା କ୍ଷତି
ମୋ ଶିରେ ଚଡ଼କ ପଡ଼େ ! ବାରେ ମୋହ ପ୍ରୀତି
କାହାର ମମତା ନାହିଁ ! ହସି କଥା ପଦେ
କେ' ମୋତେ କହେନି କମା, ଆନନ୍ଦ ଗଦ୍ ଗଦେ ?
ବସିଚି ମୁଁ ମନ ଗୋଟି ମାରି ଦେଇ ମୋର
ବିଶ୍ୱର ଅନନ୍ତ ଶିଶୁ ସମ୍ପଦେ ବିଭୋର—
ହେବାକୁ ଅନ୍ତର ମୋର ଲୋଡ଼େ ନାହିଁ ଡାକେ
ବଞ୍ଚିତ ଜୀବନ ଆଜି ଯିବ କାହା ପାଖେ ?
କେ' ତା'ରେ ଧରିବ କୋଳ ? ଧରଣୀର ପଥ
ଅବରୁଦ୍ଧ ତାହା ଲାଗି, ତା' ଭାଗ୍ୟେ ସନ୍ତତ—
ଲେଖା ଖାଲି ପରାଜୟ, ଶତ ଅପମାନ
ତା' ପାଇଁ ନାହାନ୍ତି ମଧ୍ୟ ବିଶ୍ୱେ ଭଗବାନ !!

—୧୪—

ଦେଖୁଚି କେତୋଟି ଟଙ୍କା ଅଛୁ ଆଜ ପାଶେ
ହେବ ପ୍ରାପ୍ତ ଦଶବାର, ଘରି ଘରି ଆସେ
ତା'ପରେ ଚଳିବ କେବେ କ୍ରମାରେ ପୂର୍ଣ୍ଣିମା
ନାଠ ପାଇଁ କିଣାହେବ ଗୋଟେ ପାଇଜାମା;

# ଉସ୍ର

ଝିଅ ପାଇଁ ଶାଢ଼ୀ ଖଣ୍ଡେ, ହଳଆର ଲଗି
ମନ ମାନିବାର ଭଲ ସିଲ୍‌କର ଲୁଙ୍ଗି;
ଆମ ଦୁ'ଜଣଙ୍କ କଥା କାହିଁ ବା କହିବା ?
ଏହା ବାଦ୍ ମାଛ, ଶାଗ ପନ ଓ ପରିବା,
ଷ୍ଟକିଷ୍ଟରୁ ଷ୍ଟାଂନାଡ୍ରର, ଲୁଟି ନେଇ ଘରେ
ବସିଅଛୁ ଗୃରମାସ, ଦୂର ଦୂରାନ୍ତରେ
ଆଉ ସିବନାହିଁ ବୋଲି, ଅର୍ଥହୀନ ହାତେ
ରହିଛ ଦରିଦ୍ର ବାପେ; ପ୍ରାଣେ ଜ୍ୱର କାଟେ !
ଦେଖୁଛି ଏ ଧରଣୀରେ ନର ଅଭାଗ୍ୟର
କେମନ୍ତେ କରିଛି ମତେ ସାତ ନାରଖାର !

—୧୫—

ପଚାରୁଛ "ସତ ହେଲ୍, ଆଳୁ ବାଇଗଣ
କହୁତ ଗୋଟିଏ ନାହିଁ, କରିବ ତିଅଣ—
କି ଅବା ତୁମର ଲଗି ? ନାହିଁ ପଇସାଏ
ଦୋକାନୁ ଆଣନ୍ତ ଯାଇ, ପିଆଜ କୋଳାଏ,
ତହିଁରେ ବା ଚଳିଯାନ୍ତା ।" ଦେଲି ମୁଁ ଉତ୍ତର
"ଗୃକଣ୍ଟ ନାହିଁ ଛୁ ବୋଲି ସବୁ ଅଖାବର—
ମାଡ଼ ସହିବାକୁ ହୁଏ, ଦେଖନ୍ତ ଖାଡ଼ିରେ
ଅମୂଲ ତନୁକ ଥିବ, ଲୁଣତ କୁଣ୍ଡିରେ—
ରହିଥିବ ,ତାହା ଦେଇ ସିବା ଆଜି ଚଳି
ଆସିଲେ ବେଦନା ଦୁଃଖ, ତାରେ ପାଦେ ଦଳି
ଚାଲିବାକୁ ହେବ ସଖି ! ଧରିତ୍ରୀ ଉପରେ
କି ଲାଭ ଢାଳି ଅଶ୍ରୁ; ଚାହେଁନା ବିଶ୍ୱରେ
ବଳିଦେଇ ଆପଣାର ମୁକ୍ତ ମତବାଦ
ଭୁଞ୍ଜିବ ପକ୍ୱାନ୍ନ, ତହିଁ କାହିଁଛୁ ଆହ୍ଲାଦ ?

# ଉତ୍ସ

—୧୬—

ଦୁର୍ଭଗା ଏ ଜୀବନରେ ମୋର
ବିପନ୍ନ କରିଚ ଯେବେ, ନଥାନ୍ତୁ ଈଶ୍ୱର
ବୁଝିବାକୁ ଦୁଃଖ ମୋର, ମହା ଧରଣୀର
ଚତୁର୍ଦ୍ଦିଗ ସିକ୍ତ ହେଉ ମୋର ନେତ୍ର ନୀର—
ବିପୁଳ ପ୍ଲାବନ ଯେନ; ସେଇ ଶାନ୍ତିବାରି
ଜ୍ୱଳନ୍ତ ଜୀବନେ ମୋର ପାରିବ ଅଜାଡ଼ି ।
ତହିଁରେ ପାରିବି ପାଇ, ଆଶ୍ୱସ୍ତି ପରମ
ସୀମାହୀନ ଅମ୍ବରର ଗୁରୁ ନିଷ୍ପେଷଣ
କିନ୍ତୁ ମୋରେ ବାଧିବନି, ଗୋଲାପ ଶୟନେ
ପ୍ରାଣର ଉପସ୍ଥିତ ମିଳେ ? ଭୁବନେ ଭୁବନେ
ସକଳ ବିପଦ ଦୁଃଖ ନେବି ବୁକୁ ପାତି
ଫାଟିଗଲେ ଫାଟିଯାଉ ଏ ଦରିଦ୍ର ଛାତି;
ମୃତ୍ୟୁ ହେଉ ସୀମାହୀନା ଯନ୍ତ୍ରଣା ଭିତରେ
ମୋ ଆନନ୍ଦ ଗଲ୍‌ବାହିଁ କଣ୍ଟକ ପଥରେ !!

—୧୭—

ଧମକ ଚମକ ତୁମେ ଦେଇଅଛ ମୋରେ,
କର୍ମରେ ନଦେଲେ ଯୋଗ ଦୂର ଦୂରାନ୍ତରେ,
ମୋରେ ତମେ ଦଣ୍ଡ ଦେବ ନିଠୁର୍ ନିର୍ମମ !
ହାତରେ ଧରିଚ ବୋଲି ଗୋଟାଏ କଲମ
କ୍ଷମତାର ଆସନର ଏତେ ଦୁଃସାହସ
ଆମେ କେଉଁ ପଲ୍ୱଲର ଯେତ୍ନେ ପାଠ ହଂସ
ତୁମରି ଶିକାର ପରି ରହିଥିବୁ ପଡ଼ି
ସ୍ଫୁଟ ପଦେ ଜୀବନକୁ ଆତଙ୍କିତ କରି

# ଉତ୍ସ

ଜାଣି ତମେ ? ତୁମପରି ଲୁଟି ନେଇନାହିଁ
ଏକ କପର୍ଦ୍ଦକ କାହିଁ, ପ୍ରିୟାପ୍ରୀତି ପାଇଁ
ସ୍ୱାର୍ଥାନ୍ଧ ବାସନା ଲଭେ ଉଠିନାହିଁ ମନେ,
କାହାରେ କରିନ ହତ୍ୟା, କଳମର କଣେ
ଅକୁଣ୍ଠ ଆକ୍ରୋଶ ରଖି । ଧନୀଲଙ୍କ ଯିଏ
ମୃତ୍ୟୁ ବି ତାହାକୁ ଛୁଇଁ ପାରିବନି ଟିକେ !

—୧୮—

କାଲିକି ଏ ଆସନରୁ ଚାଲିଗଲେ ତମେ
ଘୃଣାଭରେ ଛେପ ପକାଇବେ କୋଟି ଜନେ ;
କରିବେନି କେହି ତୁମ ନାଆଁ ଉଚ୍ଚାରଣ ;
କହିବେ—କଣଟ ଇଏ କେତେ ହଇରାଣ ;
ଠୁଣ୍ଟା ହୋଇ ବସିଥିବ, କୋଟି ଅପଯଶ
ଶିରେ ବନ୍ଧି, ନଥିବ ଏ ମୁଖେ ହସ ହସ ।
ଲକ୍ଷ ମିଛ ଯେତେ ଯାହା ନେଇଥିବ କାହିଁ
ରୋଗ ବଇରାଗେ ସବୁ ଯିବଟି ଉଭାଇ ।
ଏଭଳି ଜୀବନ ଯାପି ବୋଲାଇବା ବଡ଼—
ଭିତରେ ରହୁଚ କବା ଆନନ୍ଦ-ନିର୍ଝର ?
ବାଟର ଭିକାରୀ ବରଂ ତୁମ ତହୁଁ ଭଲ
ଅଛି ତା' ଭିତରେ ଭରା ହୃଦୟ ସୁନ୍ଦର,
ତା' ଆଖିରେ ଲୁହ ଅଛି, ଓଠେ ଅଛି ହାସ
ବୁଝିବାକୁ ଦୁନିଆର ସୁଖ ଦୁଃଖ ପ୍ରାସ ;

—୧୯—

ବାହାରେ ଫୁଟାଣି ତୁମେ ଦେଖାଉଛ ବସି
ବଡ଼ ବଡ଼ କଥା କହି କେତେ ବାଙ୍କେ ହସି

# ଉସ୍ର

ହଜାର ହଜାର ଟଙ୍କା ଲୁଟି ଦେଶଟାର
ଅତ୍ୟାଚାର, ଅନାଚାର, ଶତ ବ୍ୟଭିଚାର
ଚଳାଇଛ ତୁମେ ଦଳେ, ମୂର୍ଖ ସନ୍ତାନ
କଳଙ୍କିତ କରୁଅଛ ଏ ଦେଶ ତମାମ ।
ତୁମରି ଭିତରେ ନାହିଁ ଜଣକ ସୁନ୍ଦର
ଗୋଟାଏ ବରିଷ୍ଠ ଆତ୍ମା, ସତ୍ୟ ସାହସର
ଦେବ ମୂର୍ତ୍ତି ପରିଚୟ, ଜମିଷକ ପାଇଁ
କି ଶିକ୍ଷା ସମ୍ପଦ, ଦେଶ ପାରିବ ବା ପାଇ ?
ତୁମରେ ଆସନ ଦେଇ, ଦେଇ ଏ କ୍ଷମତା
ମୁକୁଟରେ ଅଲଙ୍କୃତ କରି ତୁମ ମଥା
କଳଙ୍କ ପସରା ତୁମେ ସମଗ୍ର ଦେଶର
ତୁମ ଶେଷେ ଶେଷ ହେବ ଦୁର୍ନୀତି ସକଳ ।

— ୨୦ —

କଠୋର ପାଷାଣେ ଗଢ଼ା ଯାହାର ଅନ୍ତର
ଦେଖି କି ପାରିବ ସେହୁ କ୍ଷତ ଚିହ୍ନ ମୋର ?
ପୋଛି କି ପାରିବ ମୋର ନେତ୍ର ନୀରଧାରା ?
ଜୀବନେ ଛୁଇଁନି ଯାରେ ଦୁଃଖ କଷ୍ଟ ଖରା;
ବିତେ ଯା' ଜୀବନ ଅହମିକା ଆଡ଼ମ୍ବରେ,
ଆପଣାର କରିବ କି ? ମୋ ଭଳି ନିଃସ୍ୱରେ
ପ୍ରଭୁତ୍ୱର ମଦ ପିଇ ସେହୁ ମତୁଆଲ
ଶୁଣିବ କି ଗୁହାରି ସେ ଦରିଦ୍ର ହସ୍ତାର ?
ତୋଷାମଦ ଶୁଣିବାକୁ ସେହୁ କାନ ପାତେ
ଲକ୍ଷ ମିଛ ପ୍ରତିବଦନ ପଢ଼େ ଯାହା ହାତେ
ନ୍ୟାଯ୍ୟ ବୁଝାମଣା ସତେ କରିବ ମୋ ପାଇଁ ?
ମୋହଠୁ ତ ପାଇବାର ତାର କିଛି ନାହିଁ ;

# ଉତ୍ସ

ଅନ୍ଧପର ଗୃହଚ ଯେ ଧନ୍ୱରେ ନସ୍ୱତେ
ତା' ପାଖରେ ପ୍ରାର୍ଥୀ ହେବା ବଡ଼ ବାଧେ ମତେ

—୧୦—

ଇଚ୍ଛାହୁଏ ବେଳେ ବେଳେ ଯୋଲଗ୍ରୀ ଶିଙ୍ଗରେ
ଗୃହଁଥାନ୍ତି ବସି ଏଇ ବନକୁଞ୍ଜ ତଳେ ;
ଏ ବାଉଁଶ ନଈ ଏଥି ଯାଉଥାନ୍ତା ବହି
ଯପିଁଲ ଗଢରେ ଠାବେ ଠାବେ ରହି ରହି
ଦେଖୁଥାନ୍ତି ବାଘୁ ବସା ତାଳ ବାହୁଙ୍ଗାରେ
ଝୁଲିବାର । ତୋଳୁଥାନ୍ତି ଏ ବଣ ବୁଦାରେ
ଆଙ୍କୁ ଓ ବଇଚ କୋଳି ଶିଶୁସମ ବୁଲି
କ ମଧୁ ସମ୍ପଦେ ପ୍ରାଣ ଉଠୁଥାନ୍ତା ପୂରି ?
ବାଧନ୍ତାନି ମତେ ଏଇ ବନ୍ଧନ ଆଦେଶ
ସୁଦୂର ମୂଳକେ କାହିଁ । ଉଦର ଉଦ୍ଦେଶ—
ଯାର ମତେ କରିବାକୁ ଖାଲି ହଇରାଣ
ମଣିଷ ମଣିଷର କି ଶତ୍ରୁ ବଳୀସ୍ଥାନ !
ହଟିଲ ଏ ଧରିତ୍ରୀରେ । କେତେ ଯୁଗ ପରେ
ମଣିଷ ମଣିଷ ପରି ଫୁଟିବ ବିଶ୍ୱରେ ;

—୧୧—

ଧରଣୀରେ ଯେଉଁଠାରେ ଆଧିପତ୍ୟ ଟଳେ
ସେଠିକି ଜୀବନ ସ୍ରୋତ କଳତାନ ଢାଳେ ?
ଅମୃତ ଉତ୍ସବମସ୍ତୁ ବସୁନ୍ଧରା ତହିଁ
କେବେକି ଉଠଇ ଫୁଟି ସ୍ୱର୍ଣ୍ଣ ଶିଖା ବହି ?
ଲକ୍ଷ୍ମୀଚ୍ୟୁତ ହେଲପରେ ସବୁ ଝଡ଼ି ପଡ଼େ
ପ୍ରାଣର ସମ୍ପଦ ଶିଖା । ହିଲେକ ଅନ୍ତରେ

## ଉସ୍ର

ଏଇ ପ୍ରାଣହୀନ ବେଶ ମହା ଧରିତ୍ରୀର,
ଯେଉଁ ପ୍ରଭୁ ଗର୍ବ କରେ ନୋହି ନତ ଶିର,
ରହୁତ ବଜାୟ ବୋଲି ପ୍ରଭୁତ୍ୱ ଟିକକ
କେମନ୍ତେ କହିବ ନାହିଁ ସେ ମହା କଳଙ୍କ
ପ୍ରାଣବନ୍ତ ବସୁନ୍ଧରା ଗଢ଼ିବାରେ ଯାର
ପ୍ରଭୁତ୍ୱ ନ ଫୁଟେ, ସେହି ପ୍ରଭୁତ୍ୱ ପ୍ରଖର
ପ୍ରତି ରଶ୍ମି ରେଣୁରେ ମୁଁ କରେ ପଦାଘାତ
ପ୍ରଭୁତ୍ୱ-ପ୍ରତିଷ୍ଠା ନୁହେ ରଚିବା ଉତ୍ପାତ !

— ୨୩ —

ଛୁଟି ନେଇଥିଲି ବୋଲି, ଆସିଲା ନିର୍ଦ୍ଦେଶ
'ଯାଅ ଶଙ୍କସ୍ତ୍ରକ ପାଶେ,' ଗଲି ମୋ ଉଦ୍ଦେଶ—
ଜଣାଇବା ଲାଗି ତହିଁ, ଦେଲେ ସେ ଉତ୍ତର
'ବହୁ ଡେରି ହୋଇଲାଣି, କପାଇଁ ସତ୍ୱର
ନ ଆସିଲ ? ଏତେ କାଳ ମଠ ହେବା ପରେ
କେମନ୍ତେ ସାହାଯ୍ୟ ମୁହିଁ କରିବ ତୁମରେ ?
କିଛି ହୋଇ ପାରିବନି,' ନୈରାଶ୍ୟର ବାଣୀ
ପ୍ରଥମେ ଶୁଣାଇ, ପରେ ଆସ କାଲି ପୁଣି
ଦେଖିବା କହିଲେ ; ଏଇ କହିବା ଭିତରେ
ପଇସା ପାଇବା ଲାଗି ଫିକର ସତରେ
ଲୁଚି ଉଙ୍କି ମାରୁଥିଲା । ବସ୍ତା ତଳେ ତଳେ
ପୋକ ସାଉଁ ସାଉଁ ହେଲପର ଅବରଳେ
ନର ପାଳିଛି କେତେ ପଇସାର କୀଟ !
କବି ମୁଁ ଆସିଲି ଫେରି କ୍ଷୁବ୍ଧ ସଚକିତ !!

— ୨୪ —

ତୁମେତ ଆସିଲ ଏଥି ଜଣେ କ୍ଷେତ୍ରପତି
ଅଣ୍ଡା ଭଜା ମାଂସ ଝୋଳେ ଲଭିଲ ତୃପତି !

# ଉତ୍ସ

କମଳା, କଦଳୀ, ଦ୍ରାକ୍ଷା, ଅଙ୍ଗୁରର ରସ
ପିଇଲ ପର୍ବଣ ଭରି । ଢନୋଟି ଦିବସ—
ରହିଣି ଭିତରେ ନଠ ପଞ୍ଚ ଉପଚାରେ
ପାଇଲ ବହୁତ ପୂଜା । ଦଥର ବାହାରେ—
ଖରଚ ଷାଠିଏ ଟଙ୍କା । ମୁଦ୍ରା ଦୁଇଶର
ଦେଇଥିବ କେତେ ହେଲ ବଲ୍‌ଟା ପରୁଶ ।
ଦୁଃସ୍ଥ ଓ ଦୁର୍ବଳ ଏଇ ଗୃକରଆଙ୍କର
ରକ୍ତ ଶୋଷି ହେବାଲାଗି ପୁଷ୍ଟ ଓ ସବଳ
ତୁମେ ଏଥି ଆସିଥିଲ । ଆସିଥିଲ ତମେ
ଗ୍ରଜସ୍ତେଗ କରିବାକୁ, ନସାନ୍ଧ ନିର୍ଧନେ—
ଚପାଇ କ୍ଷମତା ବଳେ । ତୁମପରି ଲୋକ,
ଅମୃତର ଶିକ୍ଷାଳୟେ କି ବଷାକ୍ତ ପୋକ !!

— ୨୫ —

ଲୋଡ଼ାନାହିଁ ସୌଧବାସ ସ୍ୱର୍ଣ୍ଣ ଆଭରଣ
ଲୋଡ଼ାନାହିଁ ଲକ୍ଷମିନ୍ଥ ପାପ ଉପାର୍ଜ୍ଜନ;
ଲୋଡ଼ାନାହିଁ ଏ ସକଳ ଭିତରେ ଅନ୍ତର—
କ୍ରନ୍ଦନ କରି ଗୃଲିବାକୁ, ଟେକି ଗୃକୁଳେ
ବିପୁଳ ସୁନ୍ଦର ଏଇ ଧରିତ୍ରୀ ଉପରେ
ଅମୃତର ଜୀବନକୁ ଏଇ ଟିକକରେ
କପାଇଁ କଟିବ ଦରିଧ ? ଢଳ ଢଳ କରି
ମୁହିଁ ଗୃହେଁ ଶରତର ମୁକ୍ତା ବିନ୍ଦୁ ପରି
ସ୍ୱଚ୍ଛ ଓ ପାବନ ହେବ, ଭିତରେ ବାହାରେ
ଉଠିବ କଲ୍ଲୋଳ ନଠ ଜୀବନ୍ତ, ଶୋହାରେ
ଜୀବନର ଉପଯୋଗ, ଗର୍ବ ଗଉରବ
ଜୀବନ ଅମୃତ ଶିଖି ଭିତରେ ସମ୍ଭବ ;

# ଉଗ୍ର

ରହେ ମାଟି କୁଡ଼ିଆରେ ରହେ ବୃକ୍ଷତଳେ
ରହେ ପଛେ ଅଭାବର ଅଚଳ ଗର୍ବରେ ।

—୧୬—

ସ୍ୱାର୍ଥର ସଂଘର୍ଷଠାରୁ ସଂଘର୍ଷ ସତ୍ୟର
କାମ୍ୟ ମୋ ଦରିଦ୍ର ଏଇ କବି ଜୀବନର
ଯାତ୍ରାପଥେ, ଜାଣେ ମୁହିଁ ପଡ଼ିବ ବଜ୍ରପାତ
ଆସିବ ଅଭାବ ଘୋଟି ଜୀବନ-କବାଟ—
ରୁଦ୍ଧ ହୋଇଯାଇ ପାରେ, ମୃତ୍ୟୁ ଅବଶେଷେ
ନେଇ ଯାଇପାରେ ମୋତେ, ଦୀନ ହୀନ ବେଶେ ;
ମୋ ଲାଗି ସାହାଯ୍ୟ ଅବା ସହାନୁଭୂତିର
ସ୍ପର୍ଶ ନାହିଁ ମିଳିପାରେ, ମହୀ ଧରଣୀରୁ—
ଚତୁର୍ଦ୍ଦିଗୁ, ଆସିପାରେ ଅପମାନ ରାଶି,
ଯାଇପାରେ ନେତ୍ର ଦେଇ ଅଶ୍ରୁ ନୀରେ ଭାସି,
ସର୍ବସ୍ୱ ହରାଇ ମୁହିଁ ପଥର ଭିକାରୀ—
ପଡ଼ିଏ ବା ବୁଲିପାରେ ହୋଇ ଅନାହାରୀ—
ରାଜପଥ ଧାରେ ଧାରେ । ଏସବୁ ଭିତରେ
ବିଜୟୀ ମୁଁ, ହାରିବିନି କଦାପି ନିଜରେ !

—୧୭—

ପଥର କାଙ୍ଗାଳ କରି ରଖ ପଛେ ମତେ
ବିହରି ପାରିବି ବିଶ୍ୱେ ଆନନ୍ଦେ ସତତେ ;
ନ ଦିଅ ପଛକେ ମୋତେ ହେମ ହର୍ମ୍ୟ ବାସ
ମାଟି କୁଡ଼ିଆହିଁ ମୋର ରାଜାର ଉଆସ ;
ଘୃତାନ୍ନ ନ ଯୁଟୁ ପଛେ ମୋର ଭାଗ୍ୟେ ନାଥ !
ମାଣ୍ଡିଆ ଜାଉରେ ହେବ ମୋର ତୃପ୍ତି ଜାତ ;
ଶିରୁ ମୋ ମୁକୁଟ ପଛେ ନିଅହେ ଛଡ଼ାଇ
ପାରିବି ମୋ ଜୀବନର ଗୌରବ ବଢ଼ାଇ ;

# ଉତ୍ସ

ସର୍ବଶୂନ୍ୟ କରି ମତେ ରଖ ଧରଣୀରେ
ଭୁଞ୍ଜିବି ନାହିଁ ନାଥ କେବେ ଉଷ୍ଣ କ୍ଷୀରେ ;
ଚତୁର୍ଦ୍ଦିଗୁ ବାନ୍ଧି ଆଣ ପ୍ରଳୟ ସମୁଦ୍ର
ଭସୁନାହିଁ ନିମିଷକେ ପାଲଟିବ ରୁଦ୍ର !
କା' ରକ୍ତିମ ନୟନର ଇଙ୍ଗିତ ଭିତରେ
ଏକଇ ମୁହୂର୍ତ୍ତି ନାହିଁ ବଞ୍ଚିବ ସତରେ !!

— ୨୮ —

ମୁହିଁ ଯେ ବିଚ୍ୟୁତ ହୋଇ ତୁମମାନଙ୍କଠୁ
ରହିଲି କୁଟୀରେ ମୋର, ତୁମ ପୁଣ୍ୟ କଣ୍ଠୁ,
ପଢ଼ଏ ମୋହନ ବାଣୀ ପାରିଲିନି ଶୁଣି,
ଏକବାର ଭୁଲିଗଲ ? ଦିନରାତି ଗୁଣି
ହୁଏ ମୁଁ ତୁମରି କଥା, ତୁମ ହର୍ଷମୁଖ
ଦିଶି ଦିଶି ଯାଏ ମୋରେ, ହୁଏ ମୁଁ ଉନ୍ମୁଖ
ପୁଣି ମୁଁ ଯାଆନ୍ତି ଚାଲି, ତୁମ ସନ୍ନିଧାନେ
ପର୍ବଣେ ପର୍ବଣ ଡାଳି ଶତ ସନମାନେ,
କାଟନ୍ତି ଜୀବନ ମୋର, ସୁଖ ଦୁଃଖ ତବ
ହୃଦ ଭରି କରନ୍ତି ମୁଁ ନିତ ଅନୁଭବ !
ମାନହାନି ଲାଗେ ମୋରେ, କେମନ୍ତେ ତୁମରେ—
ବରଜି ଅସିଲି ମୁହିଁ ? ବନ୍ଧନ ଭିତରେ—
ଜୀବନର, ଫୁଟି ଉଠେ ଯେଉଁ ମଧୁତାନ
ତା' ଲାଗି ଅକୁଳେ ଚାହିଁ ରହେ ମୋର ପ୍ରାଣ ।

---

# ରାସ୍ତା କାହିଁ !

—୧—

ରାତ ! ରାତ ! ନିବିଡ଼ ଅନ୍ଧାର ରାତ ! ମୁହଁକୁ ଦିଶୁନି ମୁହଁ
ଧୂସର ପାହାଡ଼ମାଳା ଦୂରେ ଦୂରେ ଦିଶୁଅଛି ଅସ୍ପଷ୍ଟ ଆକାରେ !
ତାରାଦଳ ଚିନ୍ତାକୁଳ ହେଲାପରି ପଡ଼ୁଛନ୍ତି ଆକାଶ କିନାରେ ! !
ଆମେ ସବୁ ଯାଉଅଛୁ ଆଗକୁ ଆଗକୁ, କିନ୍ତୁ ପାରୁନାହୁଁ ଚାଲି,
ଆମକୁ ଦେଉଚି କିଏ ଅଟକାଇ କାହିଁ
ପାରୁନୁ ପାରୁନୁ ଦେଖି, ଜାଣିପାରୁଅଛୁ ଖାଲି ! !

—୨—

ଆଗକୁ ଆଗକୁ ଆମେ ମାଡ଼ିଯିବୁ ଚାଲିଯିବୁ
କିଏ ତୁମେ ? କାହିଁପାଇଁ ଗତି ରୁନ୍ଧ କର ?
ଶୁଭେ କାର ଅଟ୍ଟହାସ
'ତୁମେ ଯିବ ? ଯାଅ !
ପାରିବ ପାରିବ ଯାଇ ?'
କାହାର ଏ ଅଟ୍ଟହାସ ? କାହାର ଏ ପ୍ରଶ୍ନ ଭୟଙ୍କର ?

—୩—

ରହିଲୁ ରହିଲୁ ଆମେ, ତଥାପି କେ' ଦିଏ ବାଧା ?
ସମ୍ମୁଖେ ଦିଶଇ କିଏ ଠିଆ ହେଲାପରି,
କିଏ ସେ ଚାବୁକ ଧରି ରୋଷ କଟାକ୍ଷିତ ନେତ୍ରେ
ଆସୁଚି ପୁଣି ଯାଉଅଛି ଫେରି,
ଆମେ ସବୁ ଆତଙ୍କିତ, ଆଚମ୍ବିତ,
ଚାଲିଲୁ ଚାଲିଲୁ ଆମେ ଦ୍ୱିଗୁଣ ସାହସ ଧରି
କି ମହା ଗର୍ଜନ ଶୁଭେ !
ସମସ୍ତ ଆକାଶ ଯେହ୍ନେ ଆମ ଶିରେ ଭାଙ୍ଗିଗଲା ପରି !

# ଉଗ୍ର

— ୪ —

'ବାଟ ହେଲେ ପାଇ ଯାନ୍ତା !'
'ନା ! ନା ! ପାଇବନି ବାଟ !'
କିଏସେ କହୁଛ ଯେହ୍ନେ ଦମ୍ଭ କରି ଗୂଢ଼ !
ଆହୁରି ଚଳିଲୁ ଆମେ ସେ ଘନ ଅନ୍ଧାର କାଟି
ଦୂରେ ଦୂରେ କୋଳାହଳ,
କା'ର ଭୀଷଣ ଗର୍ଜନ ପାଟି !
ଆମର କେହ୍ନନାହିଁ ଜଣେ ସାହାସାଥି !
ଆମେ ଯେହ୍ନେ କରୁଅଛୁ ଅନୁଭବ
ଆମ ଚତୁର୍ଦ୍ଦିଗେ ରହିଅଛି ଭୀଷଣ ରୌରବ !!

— ୫ —

ଉତ୍ତର ଆସୁଛି "ଫେରଯାଅ ! ଫେରଯାଅ !
ଆମେ ସବୁ ଠିଆ ହେଲୁ ଥକ୍କା ମାରି
କେ ଆମକୁ ଠେଲି ଠେଲି ନେବାପାଇଁ ଆସୁଅଛି ଧାଇଁ !

— ୬ —

'ଆମେ ତେବେ ଏଇଠାରେ ମରିଯିବା ?
ପାରିବାନି ଆଉ ଚାଲି ?'
'ତୁମେ କି ବଞ୍ଚିଛ ସତେ ?
ବଂଚି କି ପାରିବ ଆଉ ?'
ଆସୁଛି ଉତ୍ତର !
ଆମେ ହେଲୁ ଭୀତ ତ୍ରସ୍ତ ନିର୍ବାକ ଚଞ୍ଚଳ !

— ୭ —

"ତେବେ ତୁମେ ଛାଡ଼ିଦିଅ"
"ତୁମପାଇଁ ରାସ୍ତା ନାହିଁ !
ରାସ୍ତାନାହିଁ ! ମୋଟେ ରାସ୍ତାନାହିଁ !!"

# ଉତ୍ସ

—୮—

ଆମେ କଣ ଠିଆ ହୋଇ, ଜଳ ଜଳ ରହିଥିବୁ ଚାହିଁ ?
ଆମେ ଆଉ ଯିବୁନାହିଁ ?
ଆମେ ସବୁ ପଡ଼ୁଚୁ ଝାଉଁଳ ?
ଆମକୁ ଲାଗୁଚି ବଡ଼ ବ୍ୟସ୍ତ ଓ କାଉଳ !
ଫସର ଆସୁଚି ଫାଟି,
ଆମର ଜୀବନ ନାଟି,
ଲାଗୁଅଛି ଯେହ୍ନେ ଗ୍ରାହ୍ମଡ଼ିଗଲା ପରି,
'ତୁମ ପାଇଁ ରାସ୍ତା ନାହିଁ, ରାସ୍ତା ନାହିଁ ! ମୋଟେ ରାସ୍ତା ନାହିଁ,
କାନେ କାନେ ତୁହାଇ ତୁହାଇ କିଏ ଗ୍ରାଉଜୁଅଛି ରଢ଼ି !
କେ ଆମକୁ ପରାଚୀର ଦିଗ୍‌ବଳୟ ଟାରୁ , ଏତେବେଳେ
କହିଗଲା ହେଉଚି ସ୍ମରଣ
"ଜୀବନ ପଥର ନୁହେ
ଅଗ୍ନି ଅସମ୍ଭାଳ
ଚାଲ ! ଚାଲ ! ଚାଲ !!!"

———— .

# ଅନ୍ଧକାରେ

ବିରାଟ ବିପୁଳ ନଭଶ୍ଚୁମ୍ବୀ ଉତ୍ତୁଙ୍ଗ ଏ ଶିରମାଳା ମେଳେ,
କିଏ ଅଛ ? କିଏ ଅଛ ? ମୋ ନୟନ ପ୍ରତି ବିନ୍ଦୁ ଲୁହ
ତୁମରେ କି ଛୁଇଁ ଏ ନାହିଁ ତଳେ ?
ଆସ ତମେ ! ଆସ ! ଆସ ! ଆସୁନ କାହିଁକି ?
ମତେ କ'ଣ ପାରୁନାହଁ ଦେଖି ?
କାହିଁକି କନ୍ଦନ କଥା ନେତ୍ର ବେନି ଠେଲି ?
ତୁମେ ଖାଲି ରହିଥିବ ବିଜନତା ମହାମୂର୍ତ୍ତି ଧରି ?
ମୁହିଁ ଏଥି ଠିଆ ହୋଇ ହୋଇ,
ଚାଲିଯିବ ମୋ ଦରିଦ୍ର-ପଥ ଅନୁସରି ?

ଓଠେ ମୋର ଫୁଟିବନି ହସ
ବକ୍ଷେ ମୋର ଜାଗିବନି ନବ ଉନ୍ମାଦନା ?
ଜୀବନର ପ୍ରତି ରନ୍ଧ୍ରେ ଜାଗିବନି ପ୍ରଦୀପ୍ତ ଚେତନା ?
ଉଠିବନି ? ପଡ଼ିଥିବ ? ପଡ଼ି ପଡ଼ି ଚାଲିଯିବ କାହିଁ ?
କିଏ ତୁମେ ବିରାଟ ପୁରୁଷ ରହିଅଛ ସବୁଜ ଏ ବନକୁଞ୍ଜ ଗେହେ
ଆସିବନି ଲିବେ ମୋହ ପାଇଁ ?

ସୂର୍ଯ୍ୟ ଯାଏ ପଶ୍ଚିମ ଆକାଶେ ବୁଡ଼ି
ଯିଏ ଯହିଁ ପାନ୍ଥଜନ ଆପଣାର ନୀଡ଼େ
ଗଲେଣି ବାହୁଡ଼ି,
ମାଡ଼ିଆସେ ଦୂର ଦିଗ୍‌ବଳୟୁ ଝାଲୁ
ଘନ କୃଷ୍ଣ ମହା-ଅନ୍ଧକାର,
ମୁଁ କିନ୍ତୁ ପାରୁନି ଯାଇ, ହୋଇଅଛି ଠିଆ,
ନେତ୍ରପ୍ରାନ୍ତୁ ବୋହି ଆସେ ଉଷ୍ଣ ଅଶ୍ରୁଧାର ।

# ଭୟ

ପାରୁନି ମୁଁ ଯାଇ, କୁଆଡ଼େ ମୁଁ ଯିବ ?
କାହିଁ ମୋର ଆଶା ବା ଆଶ୍ରୟ ?
ତୁମେ କେହୁ ବୁଝିବନି ମତେ ?
ରହିଥିବ ହୋଇ ଜଡ ଆକୁଳ ଅଥୟ ?
କିଏ ସେ ଆସୁଚ ତମେ କାହିଁ ମତେ କଷ୍ଟ ଦଣ୍ଡନାଇଁ ?
ଏଇ ମହା ଅନ୍ଧକାରେ କୁଆଡ଼େ ମୁଁ ଯିବ କାହିଁପାଇଁ ?

ଆସ ! ଆସ ! ଆସ ତମେ ହେ ହୃଦଙ୍ଗ ଗିରି-ବନ-କୁଞ୍ଜ-ଲତା !
କେହୁ ତୁମେ ବୁଝିବନି ? ଏଇ ମହା ଜୀବନର ବ୍ୟଥା ?
ମତେ କ'ଣ ବୁଝିବାକୁ ତୁମର ହୃଦୟ ହୁଏ ନାହିଁ ଆକୁଳ ଅଥୟ ?
ଦେବନାହିଁ ଦେବନାହିଁ ମତେ ?
ମୋ ଦରିଦ୍ର ଜୀବନର ଯେ ଟିକକ ଲୋଡ଼ା ?
ଫେରି ଯିବ ? ଏଇ ମହା-ଅନ୍ଧକାରେ ?
କେଉଁଆଡ଼େ ଯିବ ଅବା କାହିଁ ?
ମୋହପାଇଁ କେହୁ କ'ଣ ନାହିଁ ???



# ସ୍ୱପ୍ନ

— ୧ —

ପ୍ରଳୟ ତୋଫାନ ଗରଜି ଆସୁଛି ଭୀମ ଭୈରବ ରବେ,
ହଜାର ହଜାର ମହା ପାରାବାର—
ଲହରୀ ଆସୁଛି ମାଡ଼ି ବାର ବାର
ପ୍ରତିଶୋଧ ନେବ, କବା ଅନାଗ୍ରର
ଯୋଚିଯାଇଛି ଏ ଭବେ,
ପ୍ରଳୟ ତୋଫାନ ଗରଜି ଆସୁଛି ଭୀମ ଭୈରବ ରବେ ।

— ୨ —

ଚତୁର୍ଦ୍ଦିଗରେ ମହା ପାରାବାର ଲହରୀ ଉଠୁଛି ବିକଟେ ନୃତ୍ୟ କରି,
ଆତଙ୍କ ଛାୟା ଘେରି ରହିଅଛି ସୃଷ୍ଟିର ପ୍ରତି ଅନ୍ତର ତଳି ଧରି;
ଦୁର୍ଦ୍ଦିନ ଛାୟା ମେଲିଇଛି ତାର କି ବିକଟତର କାୟା !
ଶିହରି ଉଠୁଛି ପୃଥିବୀର ଦେହ,
ମନତଳେ ଖାଲି ଜାଗେ ସନ୍ଦେହ,
କିବା ଅଘଟଣ ଘଟିବ କିଏ ସେ କହି ପାରିବ ବା ତାହା ?
ଦୁର୍ଦ୍ଦିନ ଛାୟା ମେଲିଇଛି ତାର କି ବିକଟତର କାୟା !

— ୩ —

ଗୃହୁଁ ଗୃହୁଁ ଗୃହୁଁ ଆଖି ପିଛୁଳାକେ ଦେଖିଲି ନୟନ ଭରି
ଭାସୁଛି ମୋହର ଏ ବିରାଟ ମାଟି ମହା ସମୁଦ୍ରେ ବିରାଟ ବୋଇତ ପରି ।
ହିମାଚଳସମ ତରଙ୍ଗମାଳା ଊର୍ଦ୍ଧ୍ୱେ ଉଠୁଛି ପ୍ରଳୟ ତୋଫାନ ସହି,
ମୋ ମାଟି ଉପରେ କାହା ସନ୍ଧାନ ଖୋଜୁଛି ନ ହୋଇ ଅସହି ?
କାହା ଇଙ୍ଗିତେ କାହାର ଆଦେଶେ
ଆସିଅଛି ରଚି ଦୃପ୍ତ ସେ ଅଭିଯାନ !
ତାଣ୍ଡବ ରଚି ମହନଟସମ ଗାଉଛି ରୁଦ୍ରଗାନ ।

ଉସ୍ର

ପୃଥ୍ବୀର କେଉଁ ଅଜଣା ଅଣୁଣା ମହାପାରୁ ଆସି
କରୁଅଛୁ ଏଥି ପ୍ରଳୟର ଅଭିନୟ !
ଧ୍ବଂସ କରିବ ବଂଶ କାହାର, ନପାତ କରିବ କାହା ସମ୍ପଦ,
ପ୍ରତିହିଂସାର ପ୍ରତିଜ୍ଞା ବୁକେ ଜାଗିଚ ନ ହୋଇ ଥିଯ୍ର !!
ଉଧିଳି ଉଠୁଚ ଅସୀମ ଊର୍ଦ୍ଧ୍ବେ, ରାଗେ ହୋଇ ଜରଜର,
ଯେ ଯେ ଦୁର୍ଜୟ ସେ ସେ ନିଃଶଙ୍କ, ସତ୍ୟର ତେଜେ ଦଣେ କ୍ଷିବା ଈଶ୍ବର !!

—୪—

ତା'ପରେ ଦେଖିଲି ଆକାଶ ଚୁମ୍ବୀ ଅସୀମ ହର୍ମ୍ୟମାଳା,
ଦୋହଲି ଯାଉଚ ମୂଳୁ ଚୂଳ ଯାଏ,
ଗୋଟି ଗୋଟି କାହିଁ ଝଳି ପଡ଼ୁଅଛୁ କମ୍ପାଇ ଧରା ସାରା !!
ଲକ୍ଷ ଲକ୍ଷ କଳା ବେପାରୀର—
ପଇସାରେ ଯାର ଉନ୍ନତ ଶିର,
ମହା ସମୁଦ୍ରେ ପଡ଼ୁଅଛୁ ଝଳି,
ଅତଳ ଗରଭେ ସମୁଦ୍ର କାହିଁ ବୁଡ଼ାଇ ଦେଉଚ
କଳନାଂ ହେଉନ କର !!

—୫—

କାନେ କାନେ ମୋର କଏ ଯାଉଅଛୁ ଅବୋଧ୍ୟ ବାଣୀ କହି
"ସତ୍ୟର ମହା ସମୁଦ୍ର ଦେଖ ଘୋର ଗର୍ଜନେ
ଅନ୍ତରୁ ଆସୁଚ କମ୍ପାଇ ସାରା ମହୀ ।
ଯେତେ ଲାଞ୍ଚୁଆ ଯେତେ ଘରବୁଡ଼ା ଯେତେକ ଅତ୍ୟାଚାରୀ,
ବରାଟ ଶୁଭ୍ର ଏ ମାଟି ଅଙ୍ଗେ ବୋଳୁ ଅଛନ୍ତି କାଳି,
ରହିବନି କାର କନକ ହର୍ମ୍ୟ ଧନ ସମ୍ପଦ ବଳ,
ରହିବନି କାର ବଂଶରେ ଜଣେ ଦେବାକୁ ଟୋପିଏ ଜଳ !
ମହା ସମୁଦ୍ର ନେଇ ଯିବ କାହିଁ,
ସତ୍ତା କାହାର ରଖିବ ତ ନାହିଁ,

## ଉଗ୍ର

ଅସତ୍ୟ କରି ଉଷ୍ଣି ପାରିବ କେତେ କାଳ କିଏ ଦେଖାଇ ସିଂହଠାଣି ?
ସତ ନିଃଶଙ୍କ ନିର୍ମଳ ମନେ ସ୍ୱର୍ଗର ସୁଧା ଭୁଞ୍ଜି ପାରିବ କିଏ ?
ଯେଉଁଠି ରହିଛି ଜାଲ୍‌ଜୁଆ ଗୈରି ନିର୍ମମ ସୟତାନ ।"

— ୭ —

ତା'ପରେ ଦେଖିଲି ଦିଗ୍‌ବଳୟର ଏପାରୁ ସେପାରି ଧରି,
ମହା ସମୁଦ୍ରେ ଲକ୍ଷ ମଣିଷ ମୁଣ୍ଡ ଭସୁଛି,
ତରଙ୍ଗେ ଥରି ଥରି ।
କିଏ କାନ୍ଦୁଛି କେ ବୁଡ଼ି ଯାଉଛି ଶୁଭେ କା' ଆର୍ତ୍ତରବ,
କନକ-ଭୂଷଣେ ମଣ୍ଡିତ ହୋଇ ଭାସୁଛି କାହାର ଶବ ।
ଡବେଇ ଟୁବେଇ ହୋଇ କେ ଯାଉଛି, ଧନ ସମ୍ପଦ ବାନ୍ଧିଛି ଦେହେ କଟି,
ତରଙ୍ଗମାଳା ନିରେଖି ଏସବୁ, ଯାଉଛି କି ଅବା
ନିର୍ମମ ହସ ହସି ! !
ସତ୍ୟ ଶୁଦ୍ଧ ଶାନ୍ତ ନିଶ୍ୱାସ ମହା ଜନତାରେ ଗୁନ୍ଥି,
ଦିଗନ୍ତବ୍ୟାପୀ ମହା ସମୁଦ୍ର କହିଯାଉଛି ବା
ଗୁରୁ ଗମ୍ଭୀର ବାଣୀ ।
"ଦେଖି ନିଅ ଏଇ ଅସୀମ ଜନତା ନିବିଡ଼ ପାପର,
ମହା ବିଷାକ୍ତ ପ୍ରାଣୀ !
ବିଶ୍ୱାସେ କିଏ ଢ଼ାଳିଅଛି କାହିଁ ଉତ୍କଟ ହଳାହଳ,
ଲାଞ୍ଚ ଖାଇ କେ ହଜାର ହଜାର ବୁଡ଼ାଇଛି ପର ଘର ।
ସତ୍ୟ ଉପରେ ପଦାଘାତ କରି ମିଛ ଆଶ୍ରୟ ନେଇ,
ଶତ ନିଶ୍ୱାସରେ ବାଟର ଭିକାରୀ କରି ଅଛୁ ଅବା କେହି ।
କଳା ବେପାରୀ କେ ଯାଜ ଦିନକରେ ହୋଇଛି ଲକ୍ଷପତି,
ଲୁଣ୍ଠନ କରି ଶତ ନିଃସ୍ୱର ଝାଳ ବୁହା ସମ୍ପତ୍ତି ;
ସୌଧ ଉପରେ ସୌଧ ଗଢ଼ିଛି ରୁଲିଛି ମଠର ଚଢ଼ି,
ଜନତାର ମେରୁଦଣ୍ଡ ଉପରେ କଠୋର ଆଘାତ କରି ।

## ଉତ୍ସ

ଅମୃତ ସମ ଏ ଯେଉଁ ଖାଦ୍ୟ ଯୋଗାଉଚ ଏଇ ମାଟି,
ବତ୍ସାକ୍ତ କରି କଏ ସେ ବଢଉଚି କେତେ ଆଶା ତା' ଗ୍ରଉ ?
କେତେ ନଶ୍ୱର କେତେ ସମ୍ମାନ କେତେ ସେ ଅତ୍ୟାଗୁଣ !!!
କୋଟି ଜନତାର ଶୁଦ୍ଧ ଶୋଣିତେ ବାସ ଧବ ସଞ୍ଚାର ।
କ୍ଷମତା ଦଣ୍ଡ ହାତରେ ଯାହାର ଭୁଲ ସତ୍ୟର ବାଟ,
କେ' କଳା-ବେପାରୀ ପୁଞ୍ଜିପତିଠୁଁ
ଲାଞ୍ଚ ନେବାରେ ବ୍ୟସ୍ତ କାହାର ହାତ ।

— ୭ —

ଆଖି ଫେରି ମୁହିଁ ଯେତେ ଯେତେ ଗ୍ରହେଁ
କଳା ସୂତା ପରି ସୀମାହୀନ କେଉଁ ଦାଗ ଚକ୍ରର ତଳେ,
ମିଶି ଗଲା କାହିଁ ପାପ ଅନ୍ୟାୟ ରାଶି,
ଏଣେ ମୋ ସ୍ୱାଧୀନ ବଗିଚ ଏ ମାଟି
ସ୍ୱର୍ଗର ସୁନା କରଣେ ଉଠୁଚି ଥରି ଥରି ଉଦ୍ଭାସି ।
ବର୍ଷାର ସେ ଯେ ଘୋର ଗର୍ଜନ ନାହିଁ,
ପ୍ରଳୟ ତୋଫାନ ଦୂରେ ଦୂରେ ଗଲା କାହିଁ,
ମନ୍ଦ ମରୁତ ବହି ବହି ଆସେ,
ଜାଗୁଚ ମୋ ମାଟି ନବ ଉଲ୍ଲାସେ,
ନାହିଁ ଭେଦ ନାହିଁ ଦ୍ୱନ୍ଦ୍ୱ କଳହ
ଚଉଦଗେ ଖାଲି ସାମ୍ୟ ଶାନ୍ତି, ମହା ସତ୍ୟର—
ଅମୃତ ଝଲ ଫୁଟେ,
ପ୍ରତି ଅନ୍ତର ପ୍ରତି ଅନ୍ତରେ ପ୍ରେମ ଆଶ୍ଳେଷେ ଖାଲି ଢଳିପଡ଼େ
ଜୀବନ ଫୁଲର ମୋହନ ଗନ୍ଧ ଦଶ ଦିଗେ ଯେ ଛୁଟେ !!

— ୮ —

ପର ମନେକରି ସନ୍ଦେହ ଆଖେ କେ'କାରେ ଗ୍ରହୁଁନ ବାରେ,
ଜଣେ କାନ୍ଦିଲେ ଆନ ଜଣେ ତାରେ ଆପଣାର କରି ଛାଳେ;

# ଉତ୍ସ

ସସୀମ ଦୁଃଖ ଅସୀମ ପରଶେ
ଅମୃତ ହବା ମରମେ ବରଷେ !
କାହାର ଯେପର ଅଶ୍ରବ ଦୁଃଖ ଶୋଚନା ଟିକଏ ନାହିଁ ।
ନୀଳ ଆକାଶର କୋଟି ତାରା ପର
ସବୁର ହୃଦୟେ ନିର୍ମଳ ଝଳ,
ମଧୁବନ୍ଧନ ସବୁର ଭିତରେ ଅଛି କାଳ କାଳ ପାଇଁ ।

— ୯ —

ବନ କାନ୍ତାର ପଥ ପ୍ରାନ୍ତର ନୀଳ ନଭତଳ ଶ୍ୟାମଳ ଶୈଳମାଳା,
ପଲ୍ଲୀ ନଗର ବିଲ ପଦା ହ୍ରଦ ସ୍ୱଚ୍ଛ ତଟିନୀଧାରା,
ସବୁରି ଭିତରେ ଆନନ୍ଦମୟୀ ମଧୁ ଉଚ୍ଛ୍ୱାସ ଅମୃତ ଛୁଇ—
ନାଚି ନାଚି ଯାଏ, ହସି ହସି ଗାଏ ହବା ଅମୃତ ଗୀତ ;
ଆକୁଳ ଅଥୟ ଚଉଦଗ ହବା ନବ ବସନ୍ତ ସମ —
ବନ୍ଧୁ, ମସ୍ତିଷ୍କ ମନର ନିରହଙ୍କାର କଲ୍ୟାଣ ଭରା ପ୍ରୀତ ।
ଏହାରି ଭିତରେ ନଭଗୃହୀ ପକ୍ଷୀସମ
କ୍ଳାନ୍ତ ନୋହି ମୁଁ ଉଡ଼ି ଯାଉଅଛି ଅମୃତ ଶିଖା କରି ଯେ ଅନ୍ୱେଷଣ
ନୂଆଡ଼େ ଯାଉଚି, ଦୂଆଡ଼େ ଗୁଞ୍ଜୁଚି ସଙ୍ଗୀତ ମୋର ବୁକୁରୁ ଝରୁଚି
ଚଉଦିଗରୁ ଧରଣୀ ମାଗୁଚି ବୁକୁଭରା ବନ୍ଦନ !!!



# ନିରାଶର ବିଶ୍ୱାସ !

କାହାଠି କି ଶିଖା  ରହିଛି ଗୁପତେ
କିଏ ବା ଜାଣିଚ କାହିଁ ?
ଜାଣିବାର ବେଳ  ରହିଚ ବହିତ
ସର ନାହିଁ ! ସର ନାହିଁ !
ଗୁହା ଅନ୍ଧକାରେ  ଜନମିବ ପଛେ
ବଢାଇବ ମୋର ବକ୍ଷ
ଖୋଜା ପଡ଼ିବ ମୁଁ  ନିଶ୍ଚୟ ଦିନେ ଗୋ
ପଦ୍ମରାଗ ହୋଇ କିବା ! *



* ଏ କବିତାଟି ୧୯୩୩ ମସିହାରେ ଲିଖିତ । ଏଇ ଲେଖକର ଆଜକୁ ୨୫ ବର୍ଷ ତଳେ ପ୍ରକାଶ ପାଇଥିବା 'ଦୀପ୍ତି' ନାମକ କବିତା ପୁସ୍ତକରୁ ଏ କବିତାଟି ଗୃହୀତ ହୋଇଅଛି ।

# ପାହାଡ଼ୀ ବାଳିକାର ଅଭିସାର

ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ଚଉଆଡ଼େ ଖାଲି ପାହାଡ଼ ମାଳା,
ବୁଡ଼ିଯାଏ ରବି, ପାହାଡ଼ ସେ ପାରେ
ଖେଳାଇ ମୋହନ ପାଟଳ ଧାରା;
କିଏ ସେ ଆସୁଚି ପାହାଡ଼ୀ ବାଳିକା !
ନବ ଯଉବନୀ କନକ ଗୋରୀ,
ବୁକୁରୁ ବସନ ଖସି ଖସି ପଡ଼େ
ଓଠେ ଫୁଟେ ନବ କମଳ କଳି !

ଏକାକୀ ଚାଲିଚ ଗୋଧୂଳି ବେଳାରେ
ପାହାଡ଼ର ପାଦେ ସବୁଜ କ୍ଷେତେ,
କାହାଲାଗି ତୁମ ମଧୁ ଯଉବନ ?
ନୀଳ ନୟନର ଚାହାଣୀ ଯେତେ ;
ତୁମ ଏଇ ଓଠ ବାଜିବ ଯା' ଓଠେ
ଏ ବୁକୁ ବାଜିବ ଯାହାର ବୁକେ
ଏ ଆଖି କହିବ— ଯେ ଆଖିରେ କଥା
ଧନ ତା' ବଢିବ କି ଶିଖି ସୁଖେ !!

ଚାଲ ବର ବଧୂ ! ଚାଲ ଗୋ ତୁରିତେ
ତୁମ ଲାଗି କିଏ ଥିବଟି ଚାହିଁ
ମରମେ ମରମ ଖୋଜୁଥିବ କେତେ
ସେନେହ ପରଶ ବୋଳିବା ପାଇଁ ;
ରାତି ହୋଇ ଆସେ, ପଥ ଘାଟ ଏବେ
ନିଶୂନୁ ନିଶୂନ ହେଲଣି ପରା,
ନୀଳ ନଭତଳେ ଗୋଟି ଗୋଟି ହୋଇ
ପଡ଼ିଲେଣି କେତେ ହୀରକ ତାରା !

# ଉତ୍ସ

ଚାଲ ଚାଲ ତୁମେ ପାହାଡ଼ି ଛଇଳୀ !
ଚହଟାଇ ତୁମ ମୋହନ ବାସ,
ସେ କେଉଁ ସୁଦୂର ପ୍ରଣୟୀର ଓଠେ
ଫୁଟାଇବ ପଣି କନକ ହାସ
ତୁମେ ଯାଉଅଛ ଯା’ ଲାଗି ଅଧୀରେ
ଆସୁଥିବ ଯେବେ ସେ ଅଧ ବାଟେ,
କେଉଁ ବଣ ଖୋଲେ ଭେଟିବ ତାହାରେ
କିବା କୋଟି ନିଧି ପାଇବ ହାତେ !

ଯୁଗଳ ବିହାରେ ସେ ବିପିନ ମାଳେ
ଜୋସ୍ନା ବଞ୍ଚଏ ବୁଲିବ ଚହିଁ
ପ୍ରିୟ ଓଠୁ ଯେଉଁ ହସ ଫୁଟୁଥିବ
ପିଉଥିବ ବେନି, ବେନିରେ ଚାହିଁ ;
ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ସେ କେଉଁ ପାହାଡ଼େ ଭେଟିବ ତାରେ
ଚାଲ ଚାଲ ତୁମେ ପାହାଡ଼ୀ ବାଳିକା !
ମିଶିଯାଅ ଦୂର ପାହାଡ଼ ମାଳେ ;

ବୃକ୍ଷତଳେ କେତେ ମୋହନ ବାସନା
ଫୁଟି ଉଠୁଥିବ ଆବେଗ ଭରେ,
କି ଭଳି ଚାହିଁବ ପହିଲ ଦେଖାରେ
କି କଥା କହିବ ଅଧର ତଳେ !
କି ଭଳି ହସିବ ମୁରୁକି ମୁରୁକି,
ପ୍ରଥମ ପରଶ ବାଜିଲେ ଦେହେ
ଥର ଥର କରି, ଥରି ଉଠୁଥିବ—
ସେ ନବ ଯୁବାର ଅସୀମ ସ୍ନେହେ ;

# ଉଷ୍ମ

ସୀମା ସ୍ୱପ୍ନ ମଧୁ— ମମତା ଡୋରରେ
ଯୋଡ଼ି ହୋଇଯିବ ସେ ଯୁବା ସହ
ଏ ଦେହ ମନର ଯେତେ ବଇଭବ
ଢାଳଦେବ କା'ରେ ହୋଇ ଅଥୟ !
ହସି ହସି ପ୍ରାଣ— ଅସର ସୁଷମା
କାହାରେ ଜମିଛେ ଦେବ ଗୋ ଦେଇ,
ସେ ଲଗି ଗୁଲୁଚ କି ମଧୁ ଆବେଶେ
ପାଦ ଅବା ତଳେ ପଡ଼ଇ ନାହିଁ !

ଦୂରୁ ଦୂରେ କା'ରେ ଝରେଖି ଗୁହୁଁଚ
ବେଳେ ବେଳେ ନୀଳ ଭ୍ରୂଲତା ଟେକି,
ପ୍ରିୟ ପଣ ତବ, କା ସ୍ୱରୂପ ଛାୟା
ସେ ବନ ପାହାଡ଼େ ଦିଶି ଯାଏ କି ?
କି ସପନ ଦେଖି .ହୃଦୟ ତୁମର
ଉଲୁସି ଉଠୁଚ କି ମଧୁ ଆଶେ
ଯେତେ ବେଗି ବେଗି ଯାଉଚ ଆଗକୁ
କପାଳ ଉଜଳେ କି ନବ ଗରସେ !

ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ବନ୍ଧୁ ଆସେ ଦୂରୁ ପାହାଡ଼ୀ ବାଆ
ରଜତ ଜୋଛନା ଶୀତଳ ବିସ୍ୱସେ
ହସି ଉଠେ ବିଲ ପଡ଼ିଆ ଗାଆଁ
ଏ ମହା ସପନ ପାରିବାରେ ତୁମେ,
ଭସାଇ ତୁମର ତରୁଣୀ ତନୁ
ଖସି ଖସି ତୁମେ ଯାଉଚ କୁଆଡ଼େ
ସକଳ ଦଇଜ ବସୋର ମନୁ

# ଉତ୍ସ

ପର୍ୱଣ ପ୍ରେମିକ କଇଚ ଯାହାରେ
ହୃଦୟର ସୁଧା ଅଜାଡ଼ି ଦେଇ
ତା’ ତନ୍ତୁଁ ଧର୍ୱରେ ଏ ମଧୁ ଜୀବନେ
ଅଧିକ ଆଉ କି ଦଶିବ କେନ୍ଦ୍ର ?
ମର ଶୋଇଥିଲେ, ମଡ଼ା ହୋଇ ସେ ତ
ଦଶିବ ମୋହନୁ ମୋହନତର
ଲୋତକେ ପଖାଳି କରିବ ଆଦର
ନିଜରୁ ନିଜର ଅସୀମ ଅର ;

ମମତା ସେ କିବା ମନ୍ତୁସ୍ୱ ତା’ ଅଂଗେ
ମରଣେ ଯେ ଢାଳେ ଅମର ସୁଧା
ମରିପାରେ କି ସେ ? ଯାହା ଲାଗି ତା’ର
ଜାଗିଚ ମରମେ ମୋହନ କ୍ଷୁଧା ;
ସେ ମମତା ମଧୁ — ମୋହନ ଛଇରେ
ଛଇଲୀ ତୁମେ ମୋ ଲହୁଣୀ ବାଳା
ଦୂରରୁ ଦୂରକୁ ବୁଲିଥାଅ ତୁମେ
ପାଦେ କୁଣ ଫୁଟୁ କି ଅଛୁ ଖବର ?

•

ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ବନ୍ଧୁଆସେ ଦୂରୁ ପାହାଡ଼ୀ ବାଆ ;
ଭୂମର କେଶର କିଆଫୁଲ ବାସ
ହଡ଼ି ଚନ୍ଦ୍ରଠାରୁ ପାହାଡ଼ ଗାଆଁ
ଜୀବନେ ଯାହାକୁ ଆପଣା କରିଚ
ଆପଣା ତୁମରେ କରି ସେ ନାହିଁ ?
ଯେତେ ବାଧା ଆସୁ ଏ ପାରେ ସେ ପାରେ
ଛାଡ଼ବାଡ଼ କେବେ ହେବ କି କାହିଁ ?

# ମୁକ୍ତି ଓ ମିଳନ

କବିତାଟି ] ଗଞ୍ଜାମ ଜିଲ୍ଲା ମାଳ ଅଞ୍ଚଳର ଗୋଟିଏ କିମ୍ବଦନ୍ତୀକୁ ନେଇ ଲିଖିତ । ଗଞ୍ଜାମ ମାଳ ଅଞ୍ଚଳରେ ଗୋଟିଏ ସୁନ୍ଦରୀ ଆଦିବାସୀ ବାଳିକା ଥିଲା । ସମତଳ ଅଞ୍ଚଳର ଜଣେ ତରୁଣ ସହିତ ତାହାର ଆଗରୁ ସ୍ନେହ ପରିଚୟ ଥିଲା । ବାଳିକାଟିର ବାପ, ମାଆ ଏବଂ ମାଳ ଅଞ୍ଚଳର ଆଦିବାସୀ ମାନଙ୍କର ଦଳପତି, ତାହାର ପ୍ରେମିକ ସହିତ ସକଳ ସମ୍ପର୍କ ଛାଡ଼ି ଦେବାକୁ କହିଲେ । ବାଳିକା ଏଥିରେ ରାଜି ହେଲା ନାହିଁ । ତାହାର ପ୍ରେମିକ ମାଳ ଅଞ୍ଚଳକୁ ଆସିବାରୁ ତାକୁ ଦଳପତି ଗୋଟିଏ ପର୍ବତ ଗୁମ୍ଫାରେ ବନ୍ଦୀକଲେ । ଆଦିବାସୀ ବାଳିକା ପର୍ବତ ଗୁମ୍ଫା ନିକଟକୁ ଆସି ତାହାର ପ୍ରେମିକକୁ ଛାଡ଼ି ଦେବାପାଇଁ ଅନୁନୟ କଲା । ତାହାର କାତର ପ୍ରାର୍ଥନା କେହି ଶୁଣିଲେ ନାହିଁ । ପ୍ରେମ ପାଗଳିନୀ ବାଳିକା ଅର୍ଦ୍ଧରାତ୍ର ସମୟରେ ଗୁମ୍ଫାର କବାଟରେ ତିନଥର ହାତ ମାରିବାରୁ କବାଟ ଆପେ ଆପେ ଫିଟିଗଲା ଏବଂ ଉଭୟଙ୍କର ମିଳନ ହେଲା !

'ପାହାଡ଼ୀ ବାଳିକାର ଅଭିସାର' କବିତାଟି ଏହି କବିତାର ଗୋଟିଏ ଅଂଶ ।

— ୧ —

ମରିବ ନାହିଁ ମୁଁ ମରିବ ନାହିଁ
ବଞ୍ଚି ରହିବ ତାହାରି ପାଇଁ
କିଏ ତାରେ କିଆଁ କଇଦ କଲା ?
କି ଦୋଷ ସେ ତବ କରିଛି କାହିଁ ?
ଆସିଥିଲା ସେ'ତ ମୋହରି ପାଇଁ
ମରୁଛି ସେ ଆଜ ମୋହରି ପାଇଁ
ଛାଡ଼ିଲେ ଛାଡ଼ିବ ଧରିରେ ସବୁ
ତା'ରେ ଏ ବୁକୁରୁ ଛାଡ଼ିବ ନାହିଁ !

# ଉତ୍ସ

—୨—

ସେ ଦେହ ଏ ଦେହେ ଯାଇନି ବାଜି,
ସେ ଆଖି ଦେଖିନି ଏ ଆଖି ଠାର,
କେତେ ଆଶା ଧରି ନଥିବ ଆସି
ଡେଜୁଥିବ କାହିଁ ଲୋତକଧାର !
ସେ ଓଠ ପିଇନି ଏ ଓଠ ମଧୁ
ଲୋଡ଼ୁଥିବ କେତେ ପିଇବା ପାଇଁ,
ସେ କେଉଁ ବିଜନ ଅନ୍ଧକାରେ
ଫିକା ପଡ଼ି'ରହୁଥିବ ବା କାହିଁ !

—୩—

ଗଳି ହେଉଥିବ ନୀରବେ କାହିଁ,
ମୋ ପାଖେ ନିଭୃତ ରହିବା ପାଇଁ,
କେ ତା'ରେ ରଖିଲି କଏଦୀ କରି
ମନ କଥା ଜାଣି ପାରିଲି ନାହିଁ ।
ମନର ଆଶା ତା' ମନର ଆଶା
ବଉଳ ଥାଆନ୍ତା ଫଗୁଣ ରାତେ,
ମଉଳି ଗଲା ସେ ମଉଳି ଗଲା
କି ଅବା କୁହୁଡ଼ି ବରଷା ବାତେ !

—୪—

କିଏ ସେ ଜଗୁଆ ଜଗିଚ ତମେ !
ଦିଅ ମତେ ଆଜି ଦିଅରେ ଛାଡ଼ି,
ସେ କେଉଁ ପାହାଡ଼ ଗୁମ୍ଫା ତଳେ,
ନିର୍ମମେ ତାରେ ଦେଇଚ ମାଡ଼ି ।

# ଉଗ୍ର

ତାହାଠି ତୁମର କି ଅଧିକାର ?
ତୁମର ସେ କ'ଣ କରିଛି କ୍ଷତି ?
କାହିଁକି ରଖିଛ ବାନ୍ଧି ତାରେ ?
ହରିଛି ତୁମର କି ସମ୍ପତ୍ତି ?

—୫—

ବନ୍ଦୀ ହେଲେ ସେ ବନ୍ଦୀ ହେବ
ମୋହର ହୃଦୟ ପଦ୍ମ ତଳେ,
ରୁଦ୍ଧ ହେଲେ ସେ ରୁଦ୍ଧ ହେବ
ମୋ ଭୁଜ ମୃଣାଳ ବେଷ୍ଟନରେ !
ମୋହର ସେନେହ ମୋହର ପ୍ରେମ—
କି ଭଳି ବିଶାଳ ହୃଦୟ ଭରି ?
ଭାଙ୍ଗି ଏ କାରି-କବାଟ ପଟ—
ମୁକ୍ତି ତାହାର ଆଣିବ ତ୍ୱରି ।

—୬—

ଜାଣିନି ଜାଣିନ ଜାଣିନ ତମେ !
କାଳ କାଳ ଧରି ମୋ ବୁକୁ ତଳେ,
କାନ୍ଦୁଛି ଜଣେ ଚକୋରୀ ପରି
ତାହାକୁ ଦେଖିବା ପାଇଁ କି ଥରେ ।
ତୁମେ କି ପାରିବ ତାହାରେ ରଖି
କଳବଳ କରି ସେ କେଉଁ ଗାଡ଼େ ?
ଜାଣନା କି ମହା ଅଗ୍ନି ଜଳେ
ମୋ ଯୌବନର ଅନ୍ତରାଳେ !

# ଉଗ୍ର

— ୭ —

କଏ ସେ ଅଛରେ ଜଗୁଆ ତମେ !
ଏ କାରା-କବାଟ ଫିଟାରେ ଫିଟା
ଧମକ ଚମକ ଦେଖାଅ କାରେ ?
ବିରାଟ ସେନେହେଁ ମୋ ଦେହ ପିଟା !
ଏ ବଣ ପାହାଡ଼ ଘିବରେ ଥଉ,
ଦୁଲୁକି ଉଠିବ ଆକାଶ ମାଟି,
ମଧୁ ବନ୍ଧନ ତା' ଭୁଲେ ମୋର
ଯେବେ କେ' ଧରାରେ ଦେବରେ କାଟି !

— ୮ —

ଶୁଣରେ ପାହାଡ଼ ! ଶୁଣରେ ବଣ !
ଶୁଣରେ ନିବିଡ଼ ନିଶୀଥ ରାତ !
ଶୁଣ ଝର ଝର ଝରଣା ଧାରା
ଶୁଣରେ ଆକାଶ ଶୁଣରେ ମାଟି !
ଗୋଟିଏ ଆତ୍ମା ପୃଥିବୀ ପରେ
ଯେ ମୋରେ ଦେଇଚ ଜୀବନ ଢାଳି,
କାନ୍ଦୁଚି ସିଏ କେଉଁଠି ରହି,
ଜୀବନ୍ତେ, ତାକୁ ଦିଅନା ମାରି !

— ୯ —

ମୋର ଏଇ ଓଠ ମୋର ଏ ଆଖି
ଯାହାକୁ କେବଳ ରହିଚ ଚୁମ୍ବି,
ଅନ୍ତର ମୋର ଯା ଅନ୍ତରେ
ଖୋଜୁଛି, ସେ ମୋର ହୋଇବ ନାହିଁ ?

# ଉତ୍ସ

ତାହାର ମୋହର ମରମ ଯେବେ
ଏକ୍ ଏକ୍ ଭିନ୍ନ ନୁହେ,
ତାହାର ମୋହର ସେନେହ ଯେବେ
ପରସ୍ପରରେ ଜବଡ଼େ ହୁଏଁ,

—୧୦—

ତାହାର ମୋହର ଆତ୍ମା ଯେବେ
କାନ୍ଦ କାନ୍ଦ ରହିଚ ଗୃହିଁ,
ଏ ମାଟି ଉପରେ ଏଇ କ୍ଷଣେ
ତାହାର ମୋହର ମିଶିବୁ ନାହିଁ ?
ଫିଟରେ ଫିଟରେ କବାଟ ଫିଟ !
ଏଇ ହାତ ମାରେ ଫିଟରେ ଫିଟ !
ପୁଣି ହାତ ମାରେ ଭୃତ୍ୟାସୁ ଥର,
ଦେଖିବ ସତ୍ୟ ସତ କି ମିଛ ?

—୧୧—

ଫିଟିଲ ଫିଟିଲ କବାଟ ଏଇ
କିଏ ସେ ବନ୍ଦ ପାରିବ କରି ?
ସେନେହେ ଯେବେରେ ସତ୍ୟ ଆଏ,
ଆକାଶୁ ସ୍ୱର୍ଗ ପଡ଼ିବ ଝଡ଼ି !
ମୋହର ପ୍ରାଣର ପ୍ରାଣ ହେ ତମେ !
ତୁମରେ କରିବ କେ' ହଟହଟା
ବଂଚଥିଲେ ମୁଁ ଜୀବନ ଧରି,
ଫେରିଯିବ ସବୁ ଯେ ଘନଘଟା ।

# ଉସ୍ର

—୧୨—

ଆସ ମୋର ସଖା ! ଆସ ହେ ନାଥ !
ସକଳ କଣ୍ଟା ଯାଇଛ ଗୃଳି,
ଜାଣି କ ଥିଲ୍ ମୁଁ ଏ ଆଖି ଦନେ
ଜୀବନେ ତୁମରେ ଦେଖିବ ବୋଲ୍ ?
ଏ ବଣ ପାହାଡ଼ ଝରଣା ଧାରେ
ତୁମର ମୋହର ବସିବା ଗୃଳ !
ମୁଁ ଗୀତ ଗାଇବ ଶୁଣିବ ତମେ
ତୁଟିବ ପ୍ରାଣର ବେଦନା ଭାର ।

—୧୩—

ଏ ବଣ ପାହାଡ଼ ବିଜନ ଭୂଇଁ
ଆମର ପରଶେ ଉଠିବ ହସି
କଏ ସେ କାହାର କରବ କସ ?
ଜଣେ ଜଣକରେ ଉଠିଲେ ରସି !
ହସି ଖେଳ ନାଚ ସୋହାଗ ଭରେ
କାଟି ନେବା ଆମ ଜୀବନ କାଳ
ଦୁଃଖ ଦଇନ କ ଅବା ଥାଏ ?
ଆମେ ବେନ ଯେବେ ଗଳାର ହାର !



# ରହିଥାଅ ତୁମେ !

ରହିଥାଅ ତୁମେ !    ରହିଥାଅ ଏଥି,
ହସି ଖେଳ ଏଇ ପାହାଡ଼ୀ ଗାଁଏଁ,
ଦିଅ ମୋରେ ଆଜି    ଦିଅଗୋ ! ବିଦାୟ
ସୁଦୂର ମୋ ଦେଶେ ମୁଁ ଚାଲିଯାଏ ;
ରହିଥାଅ ତୁମେ    ରହିଥାଅ ଏଥି
ଏ ବଣ ପାଦପ ଲତିକା ପରି
ମନ ପରସନେ,    ମଧୁ ଆଳାପନେ,
ପ୍ରିୟଜନ ତୁଲେ ଦିବସ ହରି !
ରହିଥାଅ ତୁମେ !    ରହିଥାଅ ଏଥି,
ମୋ ପାଇଁ କାହିଁକି ଝଲେଣି ଏତେ ?
କି ଶିଖି ବିଭବ    ଦେଇଚ ତୁମରେ
ବୁଝୁନ କାହିଁକି କହିଲେ ଯେତେ ?

# ଉସ୍ର

ରହିଥାଅ ତୁମେ          ରହିଥାଅ ଏଥି
ଆଉ କାହିଁପାଇଁ ଆସ ମୋ ତୁଲେ ?
କେତେ ଦୂରେ ତୁମ          ଗାଆଁ ରହିଲାଣି
ବାଟ କାଟିଯାଅ ଆପଣା ପୁରେ ;
କେତେ ଦୂରେ ଗାଆଁ          ପୋଖରୀ ଦେଉଳ
ନଈ ନାଲ ସେତୁ ଗଲାଣି ରହି,
ଏକାକୀ କପରି          ଯିବ ଏତେ ଦୂରେ
ରାତି ହେବ, ବେଳ ଆସୁଛି ଲହିଁ ।
ଫେରିଯାଅ ଏବେ          ଫେରିଯାଅ ତମେ
କୋହ ଲୁହ ହୋଇ ରୁନ୍ଧିଛ କଆଁ ?
କେତେ ନଗୁର ମୁଁ          ଚାଲିଯାଏ ଦୂରେ
ବିଯୋଗ ଏ ମଧୁ ମୋହନ ଛୁଆ !

ଫେରିଯାଅ ତୁମେ,          ଫେରିଯାଅ ଗାଏଁ
ଅଧବାଟୁ ବେଣୀ ଆସିଛ ଚାଲି,
କୁଟୀରେ ତୁମରି          ବାପ ମାଆ ଭାଇ
ତୁମ ଲାଗି ହେଉଥିବେଟି ଭାଳି !
ମୋ ଲାଗି କାହିଁକ          ଏତେ ନିର୍ଯାତନା
ସହିବ ଗୋ ତୁମେ କଅଁଳ ପ୍ରାଣେ ?
ତୁମ ମୋ ଭିତରେ          ମଧୁ ଦେବା ନେବା
ତୁମେ ଜାଣ ଆଉ ମୁହିଁ ମୋ ଜାଣେ ।
ଏ ଶିଶୁ ଟିକକ          କାଳ କାଳ ଧରି
ଅସୀମ ଯାପନେ ଥିବ ମୋ ରହି !
ତୁମରି ଲୋଚନୁ          ଲୋତକ ବହିଲେ
ମୋ ହୃଦ କି ବାରେ ପାରିବ ସହି ?

# ଉସ୍ର

ଫେରିଯାଅ ତୁମେ     ଫେର ଗୋ କୁଟୀରେ
କାହିଁପାଇଁ ଏତେ ରହୁଚ ଚାହିଁ ?
ଏ ବଣ ପାହାଡ଼     ତଟିନୀ ସିକତା
ତୁଲେ ତୁମେ ମନେ ପଡ଼ିବ ନାହିଁ ?
ଜାଣିତ ନଥିଲି,     ଜୀବନେ ତୁମରେ
ଦେଖିତ ନଥିଲି ନୟନେ ଥରେ,
ମୋ ପାଇଁ ଗୋଟିଏ     ଫୁଲ ଫୁଟି କାହିଁ
ବାସ ଚହଟାଏ ଧରଣୀ ପରେ,
ସେ ବାସ ମହକେ     ଏ ଜୀବନ ଯେବେ
ମହକି ଉଠିଚ କ୍ଷଣିକ ପାଇଁ,
କେସନେ ବରଜି-     ପାରିବ ପରାଣୁ ?
ଭୁଲିଯିବ ସିନା ସୁଦୂରେ କାହିଁ ।

.ଶଇଲ କାନନ     ଶ୍ୟାମ ବଇଭବେ
ତୁମରେ କେତେ ମୁଁ ଦେଖିନି ସତେ ?
କେତେ ମୁଁ ଗାଇଚି     ମୋହନ କବିତା
ତୁମକୁ ବିଶ୍ୱର ମାନସପଟେ ।
ହସିଚି କେତେ ମୁଁ     ବିମୋହନ ହସ
କି ଅବା ବିକଚ କୁସୁମ ସମ !
ପାଇଚି କି ଅବା     ମୋହନ ମାଧୁରୀ
କିବା ସେ ପରାଣ ଅତୁଲ ଧନ !
ଲୋତକେ ଲୋତକେ     ଫୁଟୁଚି ଏ ଯେଉଁ—
ଅସୀମ ବେଦନା ? ବେଦନା ସେ କି ?
ମହା ଜୀବନର     ମୋହନ ବିଭବ
ଚହଦଗେ ହୋଇ ଯାଉଚି ଲେଖି !

# ଉତ୍ସ

ଫେରିଯାଅ ତୁମେ          କୁଟୀରେ ତୁମର
ଶାଳ ବନ ନଈ ପାହାଡ଼ ଘେରା
ଦେଖୁଥିବ ଯୋଉ          ଗୋଠରୁ ଫେରିବା
ଉଡ଼ିବାର ଶୁଆ ଶାରୀ ଓ ଏରା
ତୋଳୁଥିବ କେତେ          କୁଟଜ ସୁମନ
ବଣରୁ ବଣକୁ ଯୋହ୍ନାରେ ବୁଲି,
ଗାଉଥିବ କେତେ          ମୋହନ କବିତା
ମଧୁ ତାନେ, ତୁଳୁ ଉଠିବ ପୂରି !
ହସି ଖେଳି ଦିନ—          କାଟି ନଉଥିବ
ସେଇ ହସ ଖେଳ ଜୀବନ ତଳେ,
ମୋରେ ଯେବେ          ଲବେ ଅନୁଭବୁ ଥିବ,
କି ଶିଶୁ ମୋ ର ସେ ଧରଣୀ ପରେ !

ଫେରିଯାଅ ତୁମେ,          ଫେର ଗୋ କୁଟୀରେ
ମୁଁ ଫେରିବ ମୋର ସ୍ୱଦେଶ ସନ୍ଧି—
ଶାଳିଆ ଯାଦୁଆ,          ଯୋଳଶ୍ରି ଖଳେଶ୍ରି
ଚଳକା ଫୁଟାଏ ମୋହନ ଛବି ।
ବିପିନୁ ବିପିନେ,          କେଦାରୁ କେଦାରେ
ତଟିନୀ-ସିକତା-ରଜତ-ଶେଯେ,
ବୁଲୁଥିବ କାନ୍ଦି          କି ମଧୁ ସପନେ—
ଢ଼ଳ ଢ଼ଳ କବା ପୁଲକ, ସେ' ଯେ !
ଏ ସବୁ ଭିତରେ          ତୁମ କଥାଟିକ
ନୁହେଁତ କଦାପି ପାଶୋରିବାର,
ପରାଣେ ଦେଉଳେ          ଦାଉ ଦାଉ ଦାଉ
ଜଳୁଥିବ କବା କନକ ଗାର !

# ଉତ୍ସ

ଫେରିଯାଅ ତୁମେ ଫେର ଗୋ କୁଟୀରେ
ଲେଉଟି ଚାହୁଁଚ କେତେ ଯେ ମତେ !
ମନ ତ ମାନୁନି ଫେରିଯିବା ପାଇଁ
ଚାହୁଁଚ ଚାଲିବ ମୋହର ପଥେ ;
ଜଣେ ଜଣକରେ କି ମଧୁ ଧିଆନେ
ଆପଣାରେ ଦିଏ ସୋହାଗେ ଢାଳି ;
କି ନିଧି ପାଏ ସେ, ମରମେ ମରମେ
କେତେ ବାଧେ ଗଲେ ନିମିଷେ ଛୁଡ଼ି !
ସେ ବାଧା ଭିତରେ କି ଶିରୀ ଖୋଜେ ସେ
ତିନି ଭୁବନେ ଯା' ନଥିବ କାହିଁ,
ବସୁଧାର ଏ'ଯେ ମୋହନ ମାଧୁରୀ—
ପରଶେ ପରାଣ ଆଉ କି ପାଇ ?

ଫେରିଯାଅ ତୁମେ, ଫେରିତ ପାରୁନି
ଅଧବାଟୁ ଫେର ସେ ଗଛମୂଳେ
ଠିଆ ହୋଇ ମୋରେ, ରହିଅଛ ଚାହିଁ
କି ଭଳି ରହିବ ଏତେକ ଦୂରେ ?
ମମତାର'କିବା ମହା ପାରାବାରେ
ଭସାଇ ଦେଇଚ ପରାଣ ତରୀ !
ହସି ହସି ତୁମେ ଯାଉଚ କୁଆଡ଼େ
ପାରିଲେ ପାରୁନି କଳନା କରି ।
କି ମହା ବିସ୍ତାରେ ବିସ୍ତାରି ଦେଇଚ
ଆପଣା ଟିକକ ଅସୀମ ସତ୍ତ୍ୱ
ଆକାଶ ଅବନୀ ଚଉଦିଗ ଭରି
କିଭଳି ଦିଶୁଚ ଜୀବନମୟ !

# ଉତ୍ସ

ଫେରଯାଅ ତୁମେ ! ଫେରନ୍ତ ଯାଉଚ
ସଧୀର ଚରଣେ ଅଧୀର ହୃଦେ,
ବେଳେ ବେଳେ କଆଁ ଅଟକି ଯାଉଚ
ଦୂର ବନ ନଈ ସିକତା-କୁଦେ ?
ପଛକୁ ଚାହିଁଲେ ମୁଁ ଦଶୁ ନଥିବ,
ଆଗକୁ ଚାହିଁଲେ କେହିତ ନାହିଁ
ଲୁହ ତେଜ ତେଜ ମଧୁ ଅନୁଭବେ
କି ମୋହନ ଶିଶି ପାରୁଚ ପାଇ ?
ସେଇ ଅନୁଭବେ ଦିଶୁଥିବ ସବୁ
ଝଲସି ଝଲସି ନୟନେ ତବ ;
ମଣି ମୁକୁତାର ଜୀବନରୁ ବଳି,
କି ବିରାଟ ଲୁହେ ହୃଦ ବିଭବ ! ! !

ଫେରିଯାଅ ତୁମେ ଫେରନ୍ତ ଗଲଣି ·
ନିମିଷେ ଯିବଣି କୁଟୀରେ ଚାଲି
ନୟନ ବିପାଶ ଯେତେ ମୁଁ ଦେଖିଥିଲି
ଦେଖେ ବନ ବିଲ ପାହାଡ଼ ଖାଲ ;
ତୁମେ ଦେଖୁଥିବ ଘରଆଡ଼େ ଯେବେ
ଦେଖୁଥିବ ଗାଆଁ ପାହାଡ଼ ନଈ
ମୋ ଭିତରେ ତୁମେ, ମୁଁ ତୁମ ଭିତରେ
ବସା କରି ପରା ଯାଇଚେ ରହି !
ଦେଖିଲେ ଦେଖିବ ତୁମକୁ ମୋହରି
ବୁକୁର ଅତଳ ମରମ ତଳେ,
ତୁମେତ ଦେଖିବ, ତୁମ ହୃଦବେଦୀ
ମୋ ପେନ ହସୁଚ କନକ କରେ ! !

# ମୁଁ ଓ ଦୁନିଆ

ଏଇ ମହା ଦୁନିଆରେ ସମସ୍ତେ ତ ହସି ଖେଳି ରହିଚନ୍ତି,
ମୁହିଁ କାହିଁ ବ୍ୟର୍ଥତାର ସୀମାହୀନ ପାରାବାରେ—
ଉଦ୍‌ବେଳ ଡୁବେଇ ହୋଇ ଚାଲିଚ ନିଶ୍ଚିତ ?
ମୁଁ ଯେତେ ଚେଷ୍ଟା କରୁଚ ସମସ୍ତଙ୍କ ପରି ରହିବ
ରହି ପାରୁନ,
ଅନେକ ସମୟରେ ଧରଣୀର ଅତଳ ଗର୍ଭରେ
ପଡ଼ିଯାଉଚ ;
ଆଖିରୁ ଲୁହ ବୋହୁଚ,
ସେ ଲୁହର ପ୍ରତି ବିନ୍ଦୁ ପୋଛୁ ପୋଛୁ
ତଥାପି ଆଶା ରଖି ଚାଲିଚ !

ମୁଁ ତେବେ କ'ଣ ଏଇ ପୃଥିବୀର
ସକଳ ଜୀବନରୁ ଭିନ୍ନ ?
ମୁଁ ଯାହା ଚାହୁଁଚ, ଯାହା ଲୋଡୁଚ
ପାଇପାରୁନ !
ମୁଁ ଚାହୁଁନ ଧନଦୌଲତ କୋଠା,
ମୁଁ ଚାହୁଁନ କ୍ଷମତାର ରାଜସିଂହାସନ,
ମୁଁ ଚାହୁଁନ ଟଙ୍କା ପଇସା, ମଣି ମୁକ୍ତାର ଝୁଲା ;
ମୁଁ ଚାହୁଁଚ ଗୋଟାଏ ସ୍ୱାଧୀନ ସୁନ୍ଦର ଜୀବନ !
ମୁଁ ଚାହୁଁଚ ଗୋଟାଏ ଆନନ୍ଦମୟ ରାଜ୍ୟ !
ମୁଁ ଖୋଜୁଚ ଗୋଟାଏ ହୃଦୟବାନ ଆବାସ ;
ମୁଁ ଯେଉଁଠି ଏ ସବୁର ସନ୍ଧାନ ପାଉନ
ତାକୁ ପଦାଘାତ କରିଆସିଚ ;
ମୋ ଜୀବନ ସାରା ଧରି;
ଫଳରେ ମୁଁ ଦୁଃଖ କଷ୍ଟ, ଅଭାବ ଅସନ୍ତୋଷ ପାଇଚ ।

# ଉସ୍ତ

ମତେ ଲୋକେ କନ୍ଧଚନ୍ଦ୍ର ଏ ପାଗଳ,
ଏ ଦୁର୍ବଳ, ଏ ମନୁଷ୍ୟ ସମାଜର ଅପଦାର୍ଥ ପ୍ରାଣୀ;
ମୁଁ ସଇତାନକୁ ଚୋଇଠା ମାରି ଆସିଚି
ତା'ର ଦାସ ହୋଇ,
ସୁଖ ଶାନ୍ତିରେ ରହିବାଠୁ
ବରଂ ବାଟର ଭିକାରୀ ହୋଇ
ବଞ୍ଚି ରହିବା
ଗୌରବମୟ ବୋଲି ବିଶ୍ୱସିଚ ।
ଦୁନିଆରେ ତୁମେ ଯେଉଁଠି
ଲୋକମାନଙ୍କୁ ଦେଖୁଚ
ସୀମାହୀନ ପ୍ରାଚୁର୍ଯ୍ୟ ଭିତରେ
ହସି ଖେଳି ବୁଲୁଚନ୍ତି
ଏମାନେ ସମସ୍ତେ
ସଇତାନର
ପାଦ ତଳର
କୁକ୍କୁର ;
ଏମାନେ ସମସ୍ତେ ଅଇଁଠାଖିଆ
ଏମାନଙ୍କର ଯେ ବଡ଼ଲୋକୀ,
ଏମାନଙ୍କର ଯେ ଗର୍ବ ଆନନ୍ଦ,
ତା ଭିତରେ ଜୀବନ ନାହିଁ ;
ଏମାନେ ସମାଜର, ଦେଶର, ଜାତିର,
ରାଷ୍ଟ୍ରର, କଳଙ୍କର ବିରାଟ ପାହାଡ଼ !
ଏମାନେ ହତ୍ୟାକାରୀ, ଏମାନେ ଶଠ,
ଏମାନେ ଚୋର, ଡାକୁ,
ଏମାନଙ୍କୁ ଚିହ୍ନିବା ବଡ଼ କଷ୍ଟ, ବଡ଼ ଦୁଃସାଧ୍ୟ !

# ଉତ୍ସ

ମୁଁ ମୋର ଏଇ ମାଟିର କୁଡ଼ିଆ ଭିତରେ
ଶାଗ ପେଜ ଖାଇ ବଞ୍ଚି ରହୁଛି ।
ଏଠି ମୁଁ ଶାନ୍ତି ପାଏ, ଆନନ୍ଦ ପାଏ,
ଗୌରବ ଅନୁଭବ କରେ ;
ମୋର ସ୍ତ୍ରୀ, ମୋର ଝିଅ, ମୋର ନାତି
ଏମାନେ ମୋର ଦୁଃଖୀ କୁଟୀରର
ଆଦରର ସମ୍ପଦ ;
ଏମାନଙ୍କ ହସରେ କୃତ୍ରିମତା ନାହିଁ
ଏମାନଙ୍କ ହୃଦୟ ବିଷରେ ଜର୍ଜରିତ ନୁହେ
ଏମାନଙ୍କ ବସନ ଭୂଷଣ ସାଧାରଣ
ଶ୍ରେଷ୍ଠ ଡ଼କାୟତି ଧନରେ ଏ ସବୁ କିଣା ଯାଇନି ;
ଆମର ବଡ଼ଲୋକୀ ଆମର ଅମୃତମୟ ଅନ୍ତର !
ମୁଁ ଦେଖେ ମୁଁ ମୋ କୁଟୀରର ସମସ୍ତେ
ପୋଖରୀ ଭିତରେ ପଦ୍ମ ପରି
ଶୁଦ୍ଧ, ସ୍ୱଚ୍ଛ, ଆନନ୍ଦ ଢଳ ଢଳ !
ଦୁନିଆକୁ ଠକଠାକି ଦୁନିଆର ଆଖିରେ ଧୂଳି ପକାଇ
ପଇସା କମାଇବା ଆମର କାହାର ଲକ୍ଷ୍ୟ ନୁହେ ;
ଦୁନିଆକୁ ଭଲ ପାଇବା ଆମର ଲକ୍ଷ୍ୟ
ଦୀନ, ଦୁଃସ୍ଥ, ଦୁର୍ଗଣ, ପଙ୍ଗୁ, ପଦାନତ—
ଅତ୍ୟାଚାରିତ ନିଷ୍ପେଷିତଙ୍କୁ ଦେଖିଲେ
ଆମେ କାନ୍ଦପକାଉ ;
ଆମେ ତାଙ୍କୁ ହୃଦୟଭରି ସାହାଯ୍ୟ କରୁ ;
ସେଇ ଟିକିକ ସାହାଯ୍ୟ କରିବାରେ ଆମର ଆନନ୍ଦ !
ନାରିକେଳର ଶ୍ୟାମଳ-ମୋହନ-କୁଞ୍ଜ ଭିତରେ
ମୁଁ ଏଇପରି ଗୋଟିଏ ଜୀବନ ଧରି
ପଡ଼ି ରହିଛି—

# ଉତ୍ସ

ଯେଉଁ ଜୀବନ ମଳୟ ପରି ଚଞ୍ଚଳ !
ଫୁଲର ଗନ୍ଧ ପରି ଉତ୍‌ଫୁଲ୍ଲ !;
ସୂର୍ଯ୍ୟର କିରଣ ପରି ଉଜ୍ଜ୍ୱଳ !
ମୁଁ ଜୀବନରେ ଏଇପରି ବଞ୍ଚି ଆସିଚି
ମୁଁ ଜୀବନରେ ଏଇପରି ବଞ୍ଚି ରହିବି
କେତେ ଠକ ଜୁଆଚୋରଙ୍କ ଦଳର
ଶିକାର ହୋଇଚି,
ସେମାନେ ମତେ ବହୁବାର କ୍ଷତବିକ୍ଷତ କରିଚନ୍ତି
କିନ୍ତୁ ହତ୍ୟା କରିପାରିନାହାନ୍ତି ;
ମୁଁ ଏମାନଙ୍କ ହାବୁଡ଼ରେ ବହୁବାର ପଡ଼ି
ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଚି
ତଥାପି ମୋର ଧୈର୍ଯ୍ୟ ଅଛି, ସାହସ ଅଛି,
ମୁଁ କାହାର କ୍ଷତି କରିନି ;
ମୁଁ ଆନନ୍ଦମୟ, ମୁଁ ସମସ୍ତଙ୍କୁ ଆନନ୍ଦ ଅମୃତ ଦେବାକୁ ଚାହେଁ ;
ମୁଁ ଚାହେଁନା କାହାକୁ ଛନ୍ଦ ବାନ୍ଧ ରଖିବି—
ପ୍ରୀତି ଧନ ଜାଲ ପକାଇ ;
ସେଥିପାଇଁ ମୋର ଦୁଃଖ ନାହିଁ, ମୋର ଚିନ୍ତା ନାହିଁ !
ମତେ ହଇରାଣ କରି, ମତେ ବିପନ୍ନ କରି
ଯିଏ ଆନନ୍ଦ ପାଉଚି ପାଉ !
ମୁଁ ବିପନ୍ନ ହୋଇ ଆନନ୍ଦରେ ବଞ୍ଚି ରହିପାରେ
ମୁଁ କ୍ଷତଗ୍ରସ୍ତ ହୋଇ ହସି ପାରେ !
ମୁଁ ମୃତ୍ୟୁକୁ ବରଣ କରି ଜୀବନର ଆସ୍ୱାଦନ ପାଇପାରେ !
ତୁମର ଆନନ୍ଦ ତୁମର ଗର୍ବ
ଅନ୍ୟକୁ ବିପନ୍ନ କରି ରସାତଳଗାମୀ କରିଦେବା
ମୋର ଆନନ୍ଦ,
ପୃଥିବୀକୁ ଜୀବନ୍ତ କରି ତିଆରି କରିବା !!

# ମୁଁ ତୁମକୁ ନମସ୍କାର କରୁଚ !

ଆମ ଗାଁ ବାହରେ ନାନୀ ଦେଖିଲି ମୁଁ, ଯାଉଥିଲା
ଏକ ଗାଉଁ ଅନ୍ୟ ଗାଏଁ
କଣ୍ଠି ଦେହେ ଆବୋରିଛି ଦରବା ଖଣ୍ଡିଏ;
ଚଳ ଯାଉଥିଲା ଠାଏ ଠାଏ ।
ବାଟେ ମୋରେ ଦେଖି ପଚାରିଲା
'କେଉଁଆଡ଼େ ଯାଉଥିଲୁ ପୁଅ !
ମୁଁ ବଡ଼ ଅନାଥ ହୋଇ ଚଳୁଛିରେ ବାବୁ !'
କହୁ କହୁ ନେତ୍ରପ୍ରାନ୍ତୁ ବୋହିଗଲା ଲୁହ ।
ଠିଆ ହେଲି, ଚାହିଁଲି ଟିକଏ ତାରେ
ଆଖି ତାର ସକରୁଣେ ରହିଥିଲା ଚାହିଁ !
ଦେଲି ମୁଁ ଦୁଇଟି ଟଙ୍କା
'ନେଏ ନାନୀ କରିବୁ ଖରଚ
ପାଖେ ତୋର କିଛିଥିବ ନାହିଁ ।'
'ହଁ, ବାବୁ ! ତୁ ଦେଲୁ ମୁଁ ନଉଚ
ତୁ'ତ ଭାଇ ! ଦଅନ୍ତୁ ନାହିଁକି ?
କିନ୍ତୁ କାରେ କହିବୁନି,
ଶୁଣିଲେ କହିବେ ଲୋକେ
'ଭିକ ମାଗି ଚଳୁଛି ସେ ଗୋଟେ ଭିକାରୁଣୀ'

# ଭସ୍ମ

'ନା' ନା ! କହିବିନି କା'ରେ,
କହିବା ମୋ କଥା ଲୋଡ଼ା କହ ?'
କିନ୍ତୁ ତା' ପଦକ ବାଣୀ
ମତେ କଲା ଆକୁଳ ଅଥୟ !
ଦୁଃଖିନୀ ସେ, ଅଭାଗିନୀ ସିଏ,
କିନ୍ତୁ ନୁହେ କାଙ୍ଗାଳୁଣୀ, ଭିକାରୁଣୀ, ବିପଥ ଗାମିନୀ
ଜୀବନର ମର୍ମନ୍ତୁଦ ଅଭାବ ଅନାହାର ଯନ୍ତ୍ରଣା ଭିତରେ ,
ଆପଣାର ମହତ୍ତ୍ୱ ଟିକକ ଧରି ,
ଚଳୁଅଛି ଜନ ସମାଜରେ ।
ମଣିଷ ହସି ହସି ମରିପାରେ ;
କିନ୍ତୁ ମହତ୍ତ୍ୱ ଟିକକ ମାରିବାକୁ ରାଜି ନୁହେ !
ତା' ଅନ୍ତର ମନ !
ମାନ ମହତ୍ତ୍ୱର ଶେଷପରେ
ମଣିଷ ପାଲଟି ଯାଏ ଗୋଟାଏ ଅସ୍ଥିର ବଣ !

ସମସ୍ତ ଯାଇଛି ତୁମର ନାନା !
ଘର, ଦ୍ୱାର, ବିଭବ
ଅସୀମ ଦୁଃଖରେ,
ତୁମ ସାରା ଜୀବନ ହେଉଛି ଛଟ ପଟ !
ସମାଜ ତୁମକୁ ଅନାଦର କରିପାରେ,
କିନ୍ତୁ ତୁମେ ପେଟ ପାଇଁ
ମାନ ମହତ୍ତ୍ୱ, ଇଜ୍ଜତ ବିକି
ଅସ୍ଥିର ବଣ ପାଲଟି ଯାଇନ ;
କିଏ ତୁମକୁ ହତାଦର କରିପାରେ ନାନା !
ନଜରକୁ ହୁଏତ ନ ଆଣିପାରେ ;
କିନ୍ତୁ ତୁମକୁ , ଘୃଣା କରିବାକୁ
କାହାର ଜିଭ ଲେଉଟିବ ନାହିଁ ନାନା !

# ଉସ୍ର

ଜୀବନର ସକଳ ଦୁଃଖ ଠାରୁ ବଡ଼ ଦୁଃଖ
ମାନ ମହତ୍ତ୍ୱ ଇଜ୍ଜତର ଅପମାନ,
ମୃତ୍ୟୁ ପରେ ବ,
ସେ ଅପମାନ ନଭୁଲିବ ନାହିଁ ;
ତୁମର ସେ କଳଙ୍କ ନାହିଁ ;
ଭସ୍ମ କାହିଁକ ନାନ ?
ଏ ଶ୍ରେଷ୍ଠ ପୃଥିବୀ
ତୁମକୁ ଶତ ସହସ୍ରବାର ଅନାଦର କରୁ,
ଶ୍ରେଷ୍ଠ ଆଖିରେ ଦେଖୁ,
ତୁମର ଦୁଃଖ କରିବାର କିଛିନାହିଁ ନାନ !

ଆଖିର ଲୁହରେ ସେ ବନ୍ଧି ରହେ,
ନିଜର ସକଳ ମାନ ଇଜ୍ଜତ ଓ ମାନବିକତାକୁ
କ୍ଷଣିକ ପାଇଁ କି ହେଲେ ମାଗ୍ନ ନଦେଇ,
ସେ ଶ୍ରେଷ୍ଠ କାହିଁକ ହେବ ନାନ !
ନାଁ !
ତୁମେ ଗୋଟିଏ ମାଟିର ଦୀପ,
ତୁମକୁ କିଏ ନ ପସନ୍ଦରୁ,
ତୁମେ ସ୍ନିଗ୍ଧ,
ତୁମେ ସୁନ୍ଦର,
ତୁମେ ଶୁଦ୍ଧ,
ତୁମେ କଳଙ୍କର ବହୁ ଦୂରରେ !
ତୁମେ ସକଳର ନମସ୍ୟା,
ମୁଁ ତୁମକୁ ନମସ୍କାର କରୁଛି ନାନ !!

# ମାଗୁଣି

ଯେ ଗାନ ଗାଇଲେ ପୃଥିବୀର ପ୍ରତି ରେଣୁରେ ରେଣୁରେ
ଏ ଜୀବନ ମିଶିଯାଏ
ଯେ ଗାନ ଗାଇଲେ ଆତ୍ମ ପର ଏ କ୍ଷୁଦ୍ର ଧାରଣା
ହୃଦେ ନାହିଁ ଆନ ପାଏ
ଯେ ଗାନ ଗାଇଲେ ହୃଦସ୍ପେ ହୃତସ୍ପେ ଜାଗି ଉଠେ କେତେ
ଅମୃତ ଅନୁରାଗ,
ସେଇ ଗାନ ମେ.ର ରଚନାର ପ୍ରତି ତନ୍ତ୍ରୀ ଭିତରେ
ଖେଳ ହଅ ମହାରାଗ !

ଯେ ଗାନ ଗାଇଲେ ମରଣର ମହା ଯନ୍ତ୍ରଣା ମୋରେ
ନିମିଷକେ ନାହିଁ ବାଧେ,
ଯେ ଗାନ ଗାଇଲେ ଧରଣୀର ଯେତେ ବ୍ୟଥା ଜଞ୍ଜାଳ
ଦଳି ଚଲେ ମୋର ପାଦେ
ଯେ ଗାନ ଗାଇଲେ ମହାସୃଷ୍ଟିର ପ୍ରତିରେଣୁ ତଳୁ
ଆଶ୍ଳେଷ ଉଠେ ଜାଗି ,
ସେଇ ଗାନ ମୋର ରଚନାର ପ୍ରତି ତନ୍ତ୍ରୀ ଭିତରେ
ହଅ ମେଳ, ଯାଏ ମାଗି !

# ଯେଉଁଠି

ଅପମାନ ପାଇ ମଣିଷ ଯେଉଁଠି
    ଲୁହ ପୋଛୁ ଫେରି ଆସେ,
ଯେଉଁଠି ତାରେ କେ ଗୃହେ ନାହିଁ ଲବେ
    ମୁଗ୍ଧ ମଧୁର ହାସେ,

ଅନାଥ ପରିଏ ପଡ଼ିଥାଏ ଏକା,
ନୀରବ ଅଶ୍ରୁ ଢାଳୁଥାଏ ଦେଖା,
ତା ଅଧୀର ବୁକେ ଶାନ୍ତି ଦେବାକୁ
    ଯାଏ ମୁଁ ତାହାର ପାଶେ ;
ଅପମାନ ପାଇ ମଣିଷ ଯେଉଁଠି
    ଲୁହ ପୋଛୁ ଫେରି ଆସେ ।

ହତାଶ ନୟନେ ମଣିଷ ଯେଉଁଠି
    ଜଡ଼ ପରି ରହେ ପଡ଼ି,
ଯାଏ ନାହିଁ କେହି ଆଶାର ଆଲୋକ—
    ବତୀ ତାହା ପାଶେ ଧରି ।

ଲାଗେ ଅନ୍ଧାର ଚଉଦ ଭୁବନ,
ଦେଖୁଥାଏ ଖାଲି ବିଷାଦ ସପନ ,
ଦେଖାଏ ତା'ରେ ମୁଁ ଶତ ସୁନା ଛବି
    —ପ୍ରାଚୀ ସିନ୍ଦୂର ଭଳି
ହତାଶ ନୟନେ ମଣିଷ ଯେଉଁଠି
    ଜଡ଼ ପରି ରହେ ପଡ଼ି !

# ଉତ୍ସ

ମଣିଷ ଯେଉଁଠି ପ୍ରପୀଡ଼ିତ ହେଲେ
ବୁଲେ ହୋଇ ଦଗହର
ପ୍ରତ ପଦେ ତାରେ ଜୀବନ ଲଗଇ
ଦୁର୍ବହ ଭାର ପରି

ଦୈନ୍ୟ ଅଭାବ ଅବସାଦ ଭସ୍ମ
ଜୀବନକୁ କରେ ବିକଳ ଅଥସ୍ମ
ସମ୍ମୁଖେ ତାର ଜାଗେ ମୁହିଁ କିବା
ଉଜ୍ଜ୍ୱଳ ଧ୍ରୁବ ତତ୍ତ୍ୱ !
ମଣିଷ ଯେଉଁଠି ପ୍ରପୀଡ଼ିତ ହେଲେ
ବୁଲେ ହୋଇ ଦଗହର !

ମଣିଷ ଯେଉଁଠି ସଇତାନ ସହ
ସଂଗ୍ରାମ କରେ କରେ ....
ସକଳ ଶୋଣିତ ଅକାତରେ ଢାଳି,
ଯାଇଥାଏ ଥକି ପଡ଼ି

ଦିଶୁଥାଏ ମୁଖ ଉତ୍ସାହ ହୀନ,
ଦିନୁ ଦିନ ତନୁ ହେଉଥାଏ କ୍ଷୀଣ,
କୋଟି ସାହସର ସିଂହ ସୃଜେ ମୁଁ
ତାର ବୁକୁତଳ ଭରି ।
ମଣିଷ ଯେଉଁଠି ସଏତାନ ସହ
ସଂଗ୍ରାମ କରେ କରି ....

# ଉତ୍ସ

ମଣିଷ ଯେଉଁଠି ନବ୍ରୂପ୍ରାପ୍ତ ହୋଇ
ତେଜୁଥାଏ ତାର ପ୍ରାଣ !
ନଭ ଯାଉଥାଏ ସକଳ ଶଙ୍କଥ,
ମନର ଗମ୍ଭୀର ଟାଣ

ଦୁର୍ଦ୍ଦଶା ପରେ ଦୁର୍ଦ୍ଦଶାମାନ,
କାନେ ଢାଳୁଥାଏ ବ୍ୟର୍ଥର ଗାନ,
ସାର୍ଥକତାର ସନ୍ତ୍ରି ବନୀରେ
କରଦଏ ମୂର୍ଦ୍ଧି ସ୍ନାନ ;
ମଣିଷ ଯେଉଁଠି ନବ୍ରୂପାସ୍ତ ହୋଇ
ତେଜୁଥାଏ ତାର ପ୍ରାଣ !

# ସେ' ଦିନର ସେଇ ପଲ୍ଲୀ ଗାଆଁ

ସେ' ଦିନର ସେଇ ପଲ୍ଲୀ ଗାଆଁ ପାଲଟିଛି ବିରାଟ ସହର,
ବିଦ୍ୟୁତର ଆଲୋକ-ହସ୍ତରେ ଚତୁର୍ଦ୍ଦିଗ ଦିଶେ ଝଲମଲ !
ଠାଏ ଠାଏ ମୁଣ୍ଡ ଟେକି ଠିଆ, କେତେ କେତେ ବିଚିତ୍ର ଦୋକାନ ;
କେତେ କାହିଁ କଳ କାରଖାନା ଗର୍ଜି ଉଠେ ଦିବସ ତମାମ

ରାତି ଦିନ ସବୁବେଳେ ଦେଖେ ରାସ୍ତାଘାଟ ଜନ ଗହଳରେ—
ଭରପୂର, କେ' କାହିଁ ଚାଲିଛି, ଚିହ୍ନି ହୁଏ ନାହିଁ କା'ରେ ଭଲେ ;
ସନ୍ଧ୍ୟା ହେଲେ ଯୁବା ଯୁବତୀ ପିନ୍ଧି ନବ ବିଚିତ୍ର ପୋଷାକ
ଚାଲୁଛନ୍ତି, ପିଚୁ ରାସ୍ତାପରେ ବସେ ବନ୍ଧୁ କି ମଧୁ ସରାଗ !

ସେ' ଦିନର ସେଇ ପଲ୍ଲୀଗାଆଁ ପାଲଟିଛି ବିରାଟ ସହର,
ମୁଁ ଖୋଜୁଛି କି ଶିଶୁ ଏ ଥାନେ, ହଜିଅଛି କି ନିଧି ମୋହର ?
ଏ ଅନନ୍ତ ସାଜସଜ୍ଜା ମେଳେ, କି ସମ୍ପଦ ଯାଇଛି ମିଳାଇ,
ମନେହୁଏ ଜନ୍ମ ଜନ୍ମ ଧରି ତା'ରେ ନାହିଁ ପାରିବି ବା ପାଇ !

ସୀମାହୀନ ଏ ସୌଭାଗ୍ୟ ମେଳେ ମୁଁ ଖୋଜୁଛି ସେଇ ପଲ୍ଲୀ ଗାଆଁ
ମୋ ସମ୍ପଦେ ଉଠନ୍ତା ସେ' ନାଚି, ଦୁଃଖେ ମୋର କରନ୍ତା ସେ' ଆହା !

# ମୁଁ'ତ ଜଣେ କବି !

ଜୀବନସାରା କବିତା ଲେଖି ଲେଖି,
ଅଧ ଶଗଡ଼େ କାଗଜ ଜମା କଲି,
ବେଳ ପାଇଲେ ଝିକଏ ଯାଏ ଦେଖି
କି ମଧୁଶିରୀ ରହିଛ ତହିଁ ଭରି ;

କେଉଁଠି କେବେ କି ଗୀତ ଥିଲି ଲେଖି
କି ସ୍ୱରଧାରା କେଉଁଠି ଅଛୁ ରହି,
ଝିକଏ ଦେଲେ ସରିଗେ ତାକୁ ପଢ଼ି,
ଓଠରେ ମୋର ଫୁଟଇ ସୁନା ଛଇ !

ଖାଇଲା ବେଳେ ଶୋଇଲାବେଳେ ପୁଣି
ବୁଲିଲାବେଳେ ପାହାଡ଼ ବଣବନେ,
କବିତା କଥା ଚିନ୍ତା କରେ ଖାଲି,
କହେ ବା କେବେ ମୋହର ବନ୍ଧୁଜନେ !

କେ' ମନ ଦେଇ ଶୁଣେ ମୋ ଗୀତ ଅବା,
କେ'ଝିକେ ଶୁଣି ନୀରବେ ଯାଏ ଚାଲି,
କେ' କହେ ଏତେ ଲେଖି ବା କିସ ହବ ?
ପାହୁଲକୁ ଏ ଯୋଗ୍ୟ ନୋହୁ ପାର !

କେ କହେ କିଆଁ ଲେଖୁନ ପାଠ୍ୟ ବହି ?
ମିଳିବ ବହୁ ପଇସା ସେଇ କାମେ
ଏଭଳି ଗୀତ ସାତ ଶଗଡ଼ ଲେଖି
ପଢ଼ି ସେ ଥିବ, ଖାଇବେ, ଉଇମାନେ !

# ଭୟ

ଆଜି କେ' କହେ ପଣ୍ଡ ପରିଶ୍ରମ
—କବିତାରେ କି ଉଠିବ ଦେଶ ଜାତି ?
କାହିଁକି ବୃଥା ଲେଖୁଛ ଏ ଲେଖକଟା
ପାଗଳ ପରି ନଷ୍ଟ କରି ଦିବା ରାତି !

ନିଜକୁ ଦେଖେ ଦେଖେ ମୁଁ ଆନ ଜନେ
ପୋଷାକ ପତ୍ର କୋଠା ଓ ବାଡ଼ି କରି
ହାକିମି ଦେଖାଇଥାନ୍ତି କେତେ ରୂପେ
ମୁଁ ବସିଥାଏ କଲମ ଖାତା ଧରି ।

କେ କହେ ମୋର ପଢୁଛି ପୁଅ ବି. ଏ.
ଏଥର ହେବ ଡେପୁଟି ମାଜିଷ୍ଟ୍ରେଟ
କେ' କହେ ମୋର ହେଉଛି କୋଠାତୋଳା —
ପଡ଼ିବ କାଲି ବ୍ରିକ୍ ଓ କଂକ୍ରେଟ !

ସଜାଏ କିଏ ତା ବଇଠକ ଖାନା
ଆସବାବ ପତ୍ର କଟକୁ ନିଏ କିଣି,
କେ' କହେ ମୋର ନହେଲେ ଗୋଟେ ଟ୍ରକ୍
ବ୍ୟବସାୟଟା ଭଲ ତ ଚଳିବନି !

ନଶିଖିଲି ଏଇ ଦୁନିଆଟାରେ ମୁହିଁ
କବିତା ଲେଖେ କବିତା ଲେଖେ ଖାଲି
ଚୁଲିର ଘରେ ମୋ ଧନ ବଢ଼ିଯାଏ
ଶୁଏ ମୁଁ ଖାଲି ସପଟିଏ ପାରି ।

ମୋ ପାଖେ ଦେଖି ଅସନ୍ତୁଷ୍ଟ ଲୋକେ
ଟଙ୍କା ପଇସା କରେନି ଦିଆ ନିଆ
ଶାଗ ଭାତ ଯେବେ ବା ଯାହା ଆଏ,
ସେଥିରେ ମୋ'ର ଚଳଇ ଖିଆ ପିଆ ।

# ଭଦ୍ର

ଦୁଃଖ ଅଭାବେ ରହିଲେ ମଧ୍ୟ ମୁହିଁ
କବିତା ଲେଖି ପୂରୀଥାଏ ମୋ ମନ,
ଦୁନିଆ ଆଖିରେ ଗଣିତା ନୁହେ ମୁହିଁ
ମୁଁ ଯେ ଜଣେ ବିଶ୍ୱ କବିଜନ !

ଯାଙ୍କ ସାଥି ବନ୍ଧୁ ପରିଜନ !
କହନ୍ତି 'ଏଟା ନପଟ ନବୁ'ଛି ଆ,'
ଅକାମୀ ତୁମେ କୁ'ଥିକ ଯୋଗ୍ୟ ନୁହଁ,
କହନ୍ତି ମତେ ବେଳେ ବେଳେ ମୋ ପ୍ରିୟା ;

କର୍ମକ୍ଷେତ୍ରେ କେଉଁଠୁ କେତେ ରୂପେ
ମୋ ପରେ ହୁଏ ସମାଲୋଚନା କଟୁ
ମୁଁ ଯେହେତୁ ଏ ଧରଣୀ ମାଟି ପରେ
ସକଳ କର୍ମେ ନୁହଇ ମୋଟେ ପଟୁ !

ଧଳାକୁ କଳା କରିବା ଜଣା ନାହିଁ,
ଜଣାତ ନାହିଁ କରିବା ଯୁଆଖେଳି
ମୁଁ ତ କବି କେବଳ ଜଣେ କବି
ଥାଏ ମୁଁ ବସି କଲମ ଖାତା ଧରି !

ମୋ ଜୀବନ ଦୁନିଆ ଆଖିରେ ହାଇ !
ବାଏଁ ବାଏଁ ଉଡ଼ିସିବତ ଯାଉ,
ଦୁଃଖ ନାହିଁ ଶୋଚନା ନାହିଁ ଲବେ
ସିଏ ବା ମତେ ଯେ ଭଲ ରୂପେ ଚାହୁଁ ।

ମୋ କବିତାର କାଟତି ପନ୍ଥେ ନୋହୁ
ମୋ କବି ପ୍ରାଣର ନ ହେଉ ସମାଦର
ଝାଟି ମାଟିର କୁଟୀରେ ଜୀବନ ବିରୁ
ପୋଷାକ ପତ୍ରେ ନଥାଉ ଆଡ଼ମ୍ବର ;

## ଉତ୍ସ

ମତେ ଯେ ସବେ ଯିଏ ବା ଚନ୍ଦ୍ର କରୁ,
କ୍ଷୁଣ୍ଣ ନୁହେଁ ଲଭେ ସେଥିରେ ମୁହିଁ,
ମୁଁ'ତ କବି ମୁଁ'ତ ଜଣେ କବି !
ପ୍ରିୟ ଏ ମୋର ନିଖିଳ ବିଶ୍ୱ ଭୂଇଁ ।

ଉପରେ ଆକାଶ ତଳେ ଏ ବସୁନ୍ଧରା,
ଅସୀମ ପ୍ରାଣର ମୋହନ ଲୀଳା ଧରା,
ଅସୀମ ସୃଷ୍ଟି କି ମହାଲକ୍ଷ୍ୟ ବହି
ସୃଜିଛି କିଏ ପାରିବ ଅବା କହି ?

ମୁଁ ତାକୁ ପାଏ ହୃଦୟ ଭରି ଭଲ,
ମୁଁ ତା'ରେ ଦିଏ, ମୋହର ଯାହା ଦାନ,
ତା' ଲାଗି ଢାଳେ ନୟନୁ ଅଶ୍ରୁଜଳ,
ସେଇ ଯେ ମୋର ପ୍ରାଣରୁ ବଳି ପ୍ରାଣ !

ମୁହିଁ ଯେ ତ୍ୟାଗ, ତ୍ୟାଗୀ ତାହାର ପାଇଁ
ତାହାର ବୁକୁରେ ଦେବାକୁ ମଧୁ ଭରି
ଭୁଲିଛି ନିଜକୁ ; କେବଳ ତା'ରେ ସ୍ପୃହିଁ
ବାନ୍ଧି ନିଏ ମୋ ପ୍ରାଣର କାବ୍ୟ-ତନ୍ତ୍ରୀ !

ମୋହର ଘର ବିରାଟ ଏଇ ମାଟି •
ଏଇଯେ ମୋର ପ୍ରାଣର ଚିରସାଥି ;
ଏହାର ପାଇଁ କବିତା ଲେଖି ଲେଖି
ପୂଣ୍ୟ ପୁଲକେ ଭରି ଉଠେ ମୋ ଛାତି !

ମୋହର ହୋଇ ନିଜର କିଛି ନାହିଁ,
ମୋର ଯେ' ସବୁ, ଧରଣୀ ଆକାଶ ଏଇ !
ନିଜରେ ଦିଏ ମୁଁ ଅସୀମ ଗଉରବ,
ମୋହର ନିଜକ ତାହାରେ ଦେଇ ଦେଇ

# ଜଣେ ବନ୍ଧୁଙ୍କର ଖଣ୍ଡିଏ ଚିଠି ପଢ଼ି...

ଯେତେଥର ଚିଠିପାଏ ତୁମ କାନ୍ତ କରୁ
ମୂଳରୁ ମୁଁ ଶେଷଯାଏଁ ସବୁ ପଢ଼ୁ ପଢ଼ୁ,
ହସି ଉଠଇ ମୋର କବିର ଅନ୍ତର
କେତେ ଆଶା ଉନ୍ମାଦନା ଉତ୍ସାହ ସ୍ରୋତର
ଅମୃତ ପରଶ ଲଭି ! ମୋ ଲାଗି ତୁମର,
ଦୟା-ଦାନ-ଉଦାରତାର ଅସରନ୍ତି ଝରୀ,
ଉନ୍ମୁକ୍ତ ରହିଛି ନିତ, ଯେତେ ଗୁରୁତର—
କାମ ଥାଉ, ମୋହ ପାଇଁ ତୁମ ଅଭ୍ୟନ୍ତର—
ସେ କେଉଁ ଗୋପନ ପୁରେ, ଫୁଟଇ ସ୍ପନ୍ଦନ,
ତାପ ଦଗ୍ଧ ଏ ହୃଦୟେ ଶୀତଳ ଚନ୍ଦନ
ବୋଳିବାକୁ ଅକୁଣ୍ଠିତେ ! କେମନ୍ତେ ମୁଁ କବି
ସୁଝିବି ଏ ଦାନ ତବ ? କେବଳ ସମ୍ଭବି
ପାରିବ ମୋ କବିତାରେ, ଗାଇ କୀର୍ତ୍ତି ତବ ;
ନିର୍ଯାତିତ ପ୍ରାଣେ ତୁମେ ଅମୃତ ଆସବ !

---

# ଯେବେ ଭୁଲିଯାଏଁ ମୁଁ ଆଉ ଥରେ

ଜୀବନର ଅନ୍ତିମ ପ୍ରସ୍ଥାଣ ବେଳେ,
ମୁହିଁ ହେଲେ ରହିଥାନ୍ତି ପାଶେ !
ତୁମେତ ହଜିଗଲ ଗୋଟିଏ ସପନ ପରି,
କେଉଁ ଦୂର ଅଜ୍ଞାତ ପ୍ରବାସେ।
ମୁଁ ତୁମକୁ ଦେଖିଥାନ୍ତି,
ତୁମ ପାଇଁ କାନ୍ଦିଥାନ୍ତି ନେତ୍ରୁ ଲୁହ ଢାଳି,
ତୁମ ଦୁଃଖ କଷ୍ଟ ରୋଗ ଯନ୍ତ୍ରଣାରେ
ଆପଣାକୁ କ୍ଷଣେ ପାଇଁ ଦେଇଥାନ୍ତି ଜାଳି ;
ବୈତରଣୀ ତୀରେ ଯହିଁ ତୁମ ତୁଳେ ବସି
ଶୁଣୁଥିଲି କଲକଲ ଗୀତ,
ସେଠି ତୁମ ଚିତାଅଗ୍ନି ଜଳିଥିବ,
ଗୁହିଁଥାନ୍ତି ସେ ଚିତା ଅଗ୍ନିରେ
ହୃଦୟର ସମସ୍ତ ମମତା
ଆନ୍ତର ବରାଟ କରି ଢାଳି ଦେଇଥାନ୍ତି
ଯେସନ୍ତେ ଘୃତାହୁତ ;
ତୁମରି ସେ ଚିତାନଳ ପାଶୁ
ଫେରିଥାନ୍ତି କାନ୍ଦି କାନ୍ଦି ଅଧୀରେ ଉନ୍ମନେ ;
ପ୍ରଚ୍ଛକରି ଖୁହୁଁଥାନ୍ତି କୁଣ୍ଠିତ ସେ ଧୂମାନଳେ ତବ
ପ୍ରାଣ ଯେବେ ଗଲ୍ପର ବେଦନେ

## ଉସ୍ର

ହୃଥଲ୍ ସନ୍ତୁଳ, ଘନୁ ଅଡ ଘନେ ;
ତୁମ ଆତ୍ମୀୟ ସ୍ୱଜନ-ସ୍ନେହ ବନ୍ଧୁ ବାପ ମାଆ
ପତ୍ନୀ ପୁଅ ଝିଅ.ପାଖ ଓ ପଡ଼ଶୀ
ଯେବେ କାନ୍ଦୁଥିବେ ଅଶ୍ରୁସିକ୍ତ କରି—
ଏ ଧରଣୀ ମାଟି,
ସେ ସବୁରେ ମୋ ଆଖିର ତପ୍ତ ଲୁହଧାର
ଢାଳି ଦେଉଥାନ୍ତି ;
ଦୂରେ ଦୂରେ ବହୁଦୂରେ ସହସ୍ର ଯୋଜନ ପାରେ
ରହିଥିଲେ ମଧ୍ୟ,
ଯାଇଥାନ୍ତି ତୁମ ସେଇ ବିଲ ବନ ଘେରା
ଦରିଦ୍ର କୁଟୀରେ,
ବସିଥାନ୍ତି ତୁମ ସେଇ ମରଣ ଶଯ୍ୟାର ଧାରେ;
ହାତ ଚାଲି ତୁମ ସେଇ—
ତୁମ ଜଡ଼ ନିର୍ଜୀବ ଶରୀରେ,
ପାଇଥାନ୍ତି ପରିତୃପ୍ତି
ଜୀବନର ଶେଷ ଗଉରବ,
—ହେଲନି ସମ୍ଭବ ;

— ୨ —

ଗଙ୍ଗାଧର ! ଗଙ୍ଗାଧର !
ଜୀବନର କେଉଁ ସୁଦୂର ଅତୀତେ
ତୁମ ତୁଲେ ବାନ୍ଧିଥିଲି ବନ୍ଧନ ମୁଁ
ନିବିଡ଼ ନିବିଡ଼ତର ,
ତୁମପାଇଁ ଦେଖୁଥିଲି କେତେ ସ୍ୱପ୍ନ
ଦିବା ନିଶିଥିନୀ ଅବିରଳ !
ତୁମେ ଚାଲିଗଲ ! ଚାଲିଗଲ !
ଚିରଦିନ ପାଇଁ ଚାଲିଗଲ !

# ଉତ୍ସ

ଜୀବନର ଯୌବନ ବସନ୍ତେ
ତୁମର ଯେ ପ୍ରିୟଜନ ସହପାଠୀ
ତାଙ୍କୁ ମୁଁ ଦେଖୁଛି ସବୁବେଳେ ,
ତୁମକୁ ତାଙ୍କର ମେଳେ
ଦେଖିବାକୁ ପାଇଲିନି,
ଗୋଟିଏ ନିମିଷେ !

— ୩ —

ତୁମେ ଗଲ କେଉଁଆଡ଼େ
ଲୁଚିଗଲ ତମେ !
ତୁମ ପ୍ରାଣର ଅମୃତ ଟିକକ
ଦେଇଗଲ ମତେ
ମୁଁ ସେଇଟିକ ଧରି
ତୁମକୁ ହେଉଛି ଖୋଜି
ଦୂର ଦିଗ୍‌ବଳୟ ଧରି ଏଇ ଅନନ୍ତ ଜଗତେ ।
ବୈତରଣୀ ଢ଼ାଉଆ ଢେଉ
ତୋଳି ତୋଳି,
କଲତାନ ରଚି ରଚି
ଯାଉଥିବ ବୋହି ବୋହି
ତୁମ ସେଇ ଗାଁ ତଡ଼େ ତଡ଼େ,
ପନସ ବେତସ ଆମ୍ର ବନ କୁଞ୍ଜମାନେ ।
କେତେ ଯେ ପ୍ରଭାତ ସନ୍ଧ୍ୟା
କେତେ ଜ୍ୟୋତ୍ସ୍ନା ରାତି—
ପ୍ରାଣ ବିମୋହନ ରୂପ
ତରଳ ତରଙ୍ଗେ ନାଚି
ଯାଉଥିବ ଢଳି ଢଳି, ଏକ ପରେ ଆନ,

# ଉତ୍ସ

ଗୋରୁ ଗୋଠ ଫେରୁଥିବେ ନଈ ତଟୁ
କାଠୁରିଆ ହାଣୁଥିବ କାଠ,
ଚୋଟାମାନେ କାହିଁ
ହସିଖେଳ ଉଦ୍ଦାମ ପୁଲକେ
କେତେ ଯେ ତରୁଣ ଯାତ୍ରୀ
ଯା' ଆସ କରୁଥିବେ ନଈ ତଢ଼େ ତଢ଼େ
ତୁମ ଗାଁ ମୁଣ୍ଡ ମାଟି ସଡ଼କରେ ।
ଫୁଟିଥିବ କନିଅର ଫୁଲ,
ତୁମ ଗାଆଁ ନଈ ତଢ଼େ ତଢ଼େ
ବର ଓହଳରେ ଧରି,
ଦୋଳି ଖେଳୁଥିବେ କେତେ
ଗାଈ-ଜଗା ପିଲେ,
ଏ ସବୁ ଭିତରେ ମୁହିଁ
ଚାଲିଥିଲି ଦିନେ ତୁମ କୂଳେ,
ସେ ସବୁତ ରହିଥିବ ସେଇପରି !

କା' ଓଠେ ଫୁଟିବ ହସ ?
କାହା ପ୍ରାଣେ ଖେଳିଯିବ
ଉତ୍ସାହର ତଡ଼ିତ ପ୍ରବାହ ?
କାହା ପାଦ ପଡ଼ିବନି ତଳେ ?
ମୁହିଁ ଯେବେ ସେ ଭୂଇଁରେ
ଚାଲିଯାଏଁ ଆଉ ଥରେ !



# ଯିବିନି ଯିବିନି ଫେରି !

— ୧ —

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି ,
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ
ରହିଥାଉ ମତେ ଘେରି,
ଯିବନି ଯିବନି ଫେରି ;

ଶତେକ ଊର୍ମି ବାହୁତୋଳି କିଏ ଆଶ୍ଳେଷ କରେ ମତେ,
କାହା ନୟନର ଅସୀମ ନୀଳିମା ନିର୍ମଳ ନଭ ପଥେ—
କେବଣ ଅଜଣା ଅମୃତଧାମେ, ନଉଇ ନଉଇ ନିଏ,
କାହାର ବିଶାଳ ହୃଦୟ ପରଶ କିଏ ମୋ ରେ ଯାଚିଦିଏ !
କଳିଙ୍ଗ ଲୋକର କନକପୁରୀରେ କିଏ ଠିଆକରେ ମତେ ।
କିଏ ସେ ବିରାଟ ଚିର ସୁନ୍ଦର ଧରି, ଧରି ନୁହେଁ ସତେ !

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି,
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ
ରହିଥାଉ ମତେ ଘେରି,
ଯିବନି ଯିବନି ଫେରି ;

# ଉସ୍ର

—୨—

ମୁଁ ଯିବନ ଯିବନ ଯିବନ କୁଟୀରେ ଫେରେ,
ଏ ନୀଳ ଚଲ୍‌କା, ଏ ନୀଳ ପାହାଡ଼, ଏ ନୀଳ ଆକାଶ,
ରହୁଥାଉ ମତେ ଘେର,
ଯିବନ ଯିବନ ଫେର;

ମହା ବର୍ତ୍ତର ମହା ଅସୀମର ସାମାନ୍ୟ ମୁହିଁ ରେଣୁ
ସେଇ ଅସୀମର ସାଥେ ହସି ଖେଳ ବଜାଏ ଅସୀମ ବେଣୁ ;
ସେହୁ ମହା ନଟ ସାଥେ ତାଳେ ତାଳେ ନୃତ୍ୟ ମୁଁ କରେ ଆଜ
ଛନ୍ଦେ ଛନ୍ଦେ ମହା ଅସୀମର ଗାଇ ସଙ୍ଗୀତ ରାଜ ;
ଅସୀମ ମୁଁ ଅଜ, ଅରୂପ ମୁଁ ଆଜ, ମୁହିଁ ଅମୃତ ପ୍ରାଣ
ମହା ଆଲୋକର ଉଛ୍ୱାସେ ଆଜ କରେ ମୁଁ ଗଭୀର ସ୍ନାନ ;

ମୁଁ ଯିବନ ଯିବନ ଯିବନ କୁଟୀରେ ଫେରେ
ଏ ନୀଳ ଚଲ୍‌କା, ଏ ନୀଳ ପାହାଡ଼, ଏ ନୀଳ ଆକାଶ,
ରହୁଥାଉ ମତେ ଘେର,
ଯିବନ ଯିବନି ଫେର ;



# ସେ’ ଦିନ ଆସିଲ !

ସୁଦୂର ବିଦେଶ ବାସେ ଗାଆଁ ଘର ଛାଡ଼ି,
ଆସିବାର ହେଲଣି ମୋ ମାସୁଟିଏ ପର ;
କେତେଥର ଖୋଜିଲି ଏଥି ଦେଖନ୍ତ ତୁମରେ !
ଥିଲ ଏଥି ମୋହ ଭୁଲେ ବରଷକ ତଳେ,
ବିଲ ବଣ ପରବତ, ପାହାଡ଼ ପ୍ରାନ୍ତର
ପଥଘାଟ, ନଦୀତଟ ଝରଣାର ଝର,
ଏ ସକଳ ମେଳେ ଯେବେ ବୁଲୁଥାଏ ଏକା
ଖୋଜୁଥାଏ, ପାଆନ୍ତ ବା, କେବେ ତୁମ ଦେଖା !
ସେବେ ତୁମେ ଶଇଶବ ଚପଳ ବେଶରେ,
ହସି ଖେଳ ରହୁଥିଲ ସାଙ୍ଗ ସାଥି ମେଳେ;
ସେନେହ ସୋହାଗେ ମୋରେ କହୁଥିଲ କଥା ।
ଶତ ସନମାନେ ଲୋଇଁ ମୋ ଚରଣେ ମଥା ।

ତରୁଣ ବୟସେ ଏବେ କେତେ ଦୂରେ ତମେ
ପଢ଼ୁଥିବ କେତେ ଆଶା ଖେଳାଇ ଜୀବନେ ;
ନିତ ନିତ ଦେଖୁଥିବ କି ମଧୁ ସପନ !
ତରୁଣ ମୋହନ ତେଜେ ଶୋହ ଦନୁ ଦନ ;
ପ୍ରାଣ ଉଠୁଥିବ ନାଚ ଅସୀମ ବିସାରେ
ମିଶିଯିବା ଲାଗି କେଉଁ ମହା ପାରାବାରେ ;

# ଉତ୍ସ

ଲକ୍ଷ ଲକ୍ଷ ଉର୍ମି ଯହିଁ ଉଠୁଥିବେ ଫୁଟି,
ନାଚ ନାଚ ପଡ଼ୁଥିବେ ବେଲା ଭୂମେ ଲୋଟି
ସେ ମୋହନ ଶିଶୁ ନାହିଁ କଲେ ଆଲିଙ୍ଗନ
ଜୀବନ ଦର୍ଶିବ କେବେ ଜୀବନ୍ତ ମୋହନ ?
କି ବିସ୍ଫୋଟ ହୋମ ଶିଖା ଜଳାଇ ଜୀବନେ,
ରହୁଥିବ କେତେ ଦୂରେ ଦେଖିଆନ୍ତି କ୍ଷଣେ ।
ଏତେ ଏତେ କଥା ଭାଳ ରହୁଚ ଅନାଇଁ
ସେ ଦିନ ଆସିଲ ମୋରେ ଦେଖିବାର ପାଇଁ ।
ଅଧର ଅମୃତ ହାସେ, ସ୍ନେହ ସନମାନେ
ନିମିଷେ ମିଶାଇ ଦେଲ ଆପଣା ପରାଣେ ।
ଏକାକୀ ଜୀବନ ଧରି ମୁଁ ରହୁଚ ପଡ଼ି,
ସାରା ଜୀବନଟା ମୋର ଗଲା ଏଇପରି ।
ସମ୍ମୁଖେ ଚାହିଁଲେ ଦେଖେ ଶୂନ୍ୟ ଏ ଜୀବନ
ବିଲେକ କା'ସୁଖଶିଶୁ ପୁରିଯିବ ମନ ?
କାହାର ବିକଳ୍ପ ଅବା ଗହ୍ୱରବ ଦେଖି
ଠିଆହେବ ସାତ ପାଞ୍ଚେ ମୋର ମଥା ଟେକି ;
ବିପଦେ ଆପଦେ କାହିଁ ପଡ଼ିଗଲେ ଲଇଁ
ପାଣେ ପାଶେ ସବୁବେଳେ କେ' ପାରିବ ରହି ?
କାହାରେ ଭରସା କରି କାଟିନେବ କାଳ
ବାଧିବନି ଧରଣୀର ବିଷମ ଜଞ୍ଜାଳ !
ଯେ ଦିନ ଅସିଲ ଫେରି ଏ ସୁଦୂର ବାସେ,
ଲୋଚନୁ ଲୋତକ ଢ଼ାଳି, ସକରୁଣ ଭାଷେ—
କହିଲେ କୁଟୀର ରାଣୀ, "ଥିବେ କି ସେ ନାଇଁ ?
ସେ ଥିଲେ ମୁଁ ଭଲହେବ କମା ତମ ପାଇଁ ?
ପୂର୍ବରୁ ଅଧିକ ସେ'ତ ଦେଖିବେ ତୁମରେ"
ନାହାନ୍ତି ସେ କେତେ ଆଶା ରଖି ତୁମ ପରେ !

# ଉତ୍ସ

ପାଦ ମୋ ପଡୁନି ଭଲେ ବଲ୍ଲକ ତୁମରେ
ପାରିଚ ନିଜର ହୋଇ ମୋର ଧରିଚଲେ !
କି ସମ୍ପଦ ଲୋଡ଼ା ମୋର ଅଧିକ ଏ ତହୁଁ,
ଏ ମୋହନ ଶିଶୁଟିକ ଚର-ଦନ ରହୁ ।
ବର୍ଷଠୁ ବର୍ଷଠ ହୁଅ ଅନନ୍ତ ପ୍ରସାରେ
ଏଇ ମହା ଆଶୀର୍ବାଦ ତୁମ ଶିରେ ଢ଼ାଳେ,
ତୁମ ଐଶ୍ୱର୍ଯ୍ୟ ଶିଶୁ ଚର ଦନ ସୃଷ୍ଟି,
କେଉଁ ମହାଶୂନ୍ୟେ ଯାଉ ମୋ ପ୍ରାଣ ମିଳାଇ !



# ଚର ଭିକ୍ଷୁକ

ସେଇ   ଅମୃତଭରା ହସଟିକ,
ନିତ   ଦେଖିବାକୁ ମୁହିଁ ଆସିଥାଏ
ମୁଁ ତ   ସାରା ଦୁନିଆରେ ବୁଲି ବୁଲି
ସେଇ   ନିଧିଟିକ କାହିଁ ନାହିଁ ପାଏ !

ମୋରେ ଦେଖିଲେ ତା' ଟିକି ହାତ ଟେକି,
କେବା   ଆନନ୍ଦେ କୋହ୍ଲ କୋହ୍ଲ ହୋଇ,
ସେ'ତ   ମୋ ବୁକୁ ଉପରେ ଢଳି ପଡ଼େ,
ମୋରେ ଜୁଲୁ ଜୁଲୁ ଜୁଲୁ ରହେ ଚାହିଁ !

ସେ'ତ   ହସୁଥାଏ ଖାଲି ହସୁଥାଏ !
ନାଲି   ଓଠଟି ମେଲଇ ବାର ବାର,
ମୋରେ ଜାଣୁ ନଜାଣୁ କି ଆସେ ଯାଏ ?
ସେ'ତ,   ଜୀବ, ଅମୃତ ଝରଣାର !

# ଭୟ

ମୁଁ ଗୋ ! ଛୁଇଁଗଲେ ସେ'ତ ରହେ ଛନ୍ଦି,
ଟିକେ ଓଠେ ତା' ଖୋଲାଇ ସେଇ ହାସ,
ସେଇ ଟିକେ ହାତ ଦୂର ଥାଏ ଠେକ,
ତା'ରେ ଛୁଇଁଯିବା ପାଇଁ ଲାଗେ ତ୍ରାସ ?

ତା'ରେ ଧରିବାକୁ ପୁଣି ମନ ହୁଏ
ମୁଁ ଗୋ ଧରିଲେ, ମୋ ପାଖେ ଖସି ପଡ଼େ
ନୋହୁ ଶଙ୍କିତ, ନୋହୁ ସଚକିତ,
କିବା ଭାଗ୍ୟବାନ୍ ମୁଁ ମନେ କରେ !

ମତେ, ଛୁଇଁବାକୁ ସେ'ତ ରାଜି ନୁହେ
ତାରେ ଛୁଇଁ ଆସିଲେ, ସେ ରହେ ଛନ୍ଦି:
ତାର ସେ ଓଠ ହାସକୁ ଫୋପାଡ଼ିଏ,
ଅବା ଆଗ୍ରହେ ମୋରେ ଦେବା ପାଇଁ !!

ସେତ ମୁକ୍ତ ହୃଦୟେ ଦେଇ ଯାଏ,
ମୁଁ କି ନେଇପାରେ ସେଇ ଅଧିଟିକ ?
ମୁଁ ଗୋ କିବା ଦିନ ରାତି ପଡ଼ିଥାଏ,
ହୋଇ ତା' ଦୁଆରେ ଚିର ଭିକ୍ଷୁକ ! !

---

# ପଡ଼ିଛି ଏ ଶ୍ରମିକଟି ଶୋଇ !

ଦିନସାରା ହାଡ଼ଭଙ୍ଗା କାମ କରି କରି,
କ୍ଳାନ୍ତ ଆଉ ଅବସାଦ ଭରେ,
ପଡ଼ିଛି ଏ ଶ୍ରମିକଟି ଶୋଇ,
ବିସ୍ତୀର୍ଣ୍ଣ ମୁକୁଳା ଏଇ ଘାସ ପଡ଼ିଆରେ !
ମାରୁଛି ଘୁଙ୍ଗୁଡ଼ି,
ଆରାମେ ପଡ଼ିଛି ଶୋଇ,
ସବୁ ଦୈନ୍ୟ, ଅଭାବ ଜଞ୍ଜାଳ ଜାଳା,
ଯେତେକ୍ଷେ ଯାଉଅଛି ଭୁଲି !

ଶୋଉ ! ଶୋଉ ! ଆହୁରି ନିବିଡ଼ ନିଦେ ଶୋଉ ;
ଯାତ୍ରୀ ! ତାରେ
ଉଠାଅନା ଉଠାଅନା କେହୁ ;
ପ୍ରାଣ ଦାନୀ ସୈନିକ ସେ
ଏ ମାଟିର, ଏ ଦେଶର, ଏଇ ସମାଜର
ଲୁଣ୍ଠିତ କି ତାରେ,
ଅବଜ୍ଞାର ଦୃଷ୍ଟି ଢାଳି ?
ନା ! ନା ! ଶୋଉ ସିଏ, ଆହୁରି ନିବିଡ଼ ନିଦେ,
ପୃଥିବୀର ଏ ଘାସ ଶଯ୍ୟାପରେ,
ପୃଥିବୀ ତାହାର ଘର,
ଘର ତାର ବନ୍ଧା ନୁହେ
କ୍ଷୁଦ୍ର ମାଟି ଚେକକରେ ।

# ଭୟ

ଚାହଁ ତାରେ, ପ୍ରାଣ ଭରି
ହୃଦ ଭରି ଚାହଁ ତାରେ ଥରେ ;
ଯାତ୍ରି ! ତୁମେ ଯାଉଅଛ
ଏଇ ପଥପାର୍ଶ୍ୱେ, କରି କୋଳାହଳ !
ଯାଅ, କିନ୍ତୁ
ଭାଙ୍ଗନା ତାହାର ନିଦ,
ଦିଅ ତାରେ କ୍ଷଣେ ଅବସର ;
ଭଲ କରି ଶୋଉ ସିଏ, ଦେଖୁଥାଉ ସ୍ୱପ୍ନ ଆନନ୍ଦର !

ଯାତ୍ରି ! ତୁମେ କରୁଚ କି ଉପହାସ ?
ତାହାର ଜୀବନ ନାହିଁ ?
ତାହାର ଆନନ୍ଦ ନାହିଁ ?
ସିଏ ଖାଲି, ଗୋଟିଏ ମାଟିର ପିଣ୍ଡୁଳା
—ପ୍ରାଣହୀନ ପ୍ରାଣୀ !
ଗାଈ ଗୋରୁ ମଇଁଷି ପରିଏ,
ପଥଧାରେ ପଡ଼ିଅଛି ଶୋଇ
ମଶା ଓ ଡାଆଁଶ ତାରେ ରହିଛନ୍ତି ବେଢ଼ି ;
ଜୀର୍ଣ୍ଣ ବାସ ପରିହିତ ହୋଇ
ବାହୁ-ଉପାଧାନେ ରହିଅଛି ପଡ଼ି ?
ନା ! ନା ! ମନୁଷ୍ୟର ମନୁଷ୍ୟ ସେ,
ପୃଥିବୀରେ ରଖିଅଛି ଧରି !
ଶୋଉ ସିଏ, ଟିକିଏ ଆରାମେ ଶୋଉ, ଆଉ କେତେ ଘଡ଼ି !

# ସମାଧି ମନ୍ଦିର

ଯେ'ଦିନ ମୋହର ଜୀବନର ଦୀପ ଲିଭିଯିବ ଏଇ ପଥେ,
ଯେ'ଦିନ ମୋହର ଲଳିତ ବଂଶୀ ବାଜିବନି ଅବିରତେ,
ଯେ'ଦିନ ମୋହର ଦେଖା ସାକ୍ଷାତ ହେବନାହିଁ କାହା ସହ,
ଯେ'ଦିନ ମୋହର ଶତସଖା ସାଥି ଅନ୍ତର ପରିଚୟ—
ସକଳର ସାଥେ ମଧୁ ବନ୍ଧନ ନିମିଷକେ ଯିବ କଟି,
ଯେ'ଦିନ ନୟନ ଦେଖିବନି ଏଇ ବିଲ ବନ ଗଛ ଲଟି,
ଯେ'ଦିନ ମୋହର ସକଳ ସତ୍ତ୍ୱା ଧରଣୀରୁ ନିଭିଯିବ,
ଆପଣାର ହୋଇ କିଏ ଯେବେ କାହିଁ ବନ୍ଧୁ ସୋଦର'ଥିବ,
ଗରିବ କବିର ଏଇ ଅନୁରୋଧ ରକ୍ଷା କରିବ ତମେ
କହି ଯାଉଚି ମୁଁ ତୁମରି ବନ୍ଧୁ ଅତି ଆପଣାର ଜଣେ—
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

# ଉତ୍ସ

ଯହିଁ ଠିଆ ହେଲେ ଦିଶଇ ଯୋଳଖି ନୀଳ ନିର୍ମଳ କାନ୍ଥ,
ଊର୍ମି ମୁଖର ନୀଳ ଚଳକାର ଦିଶଇ କାନ୍ତ ଛନ୍ଦ,
ପଶ୍ଚିମ ଦିଗ୍‌ବଳୟର ତଳେ ଧୂସର ପାହାଡ଼ ଶ୍ରେଣୀ,
ଧରଣୀ ରାଣୀ କି ପକାଇଛି ଜୁଡ଼ା, ବାନ୍ଧିଛି କଳା ବେଣୀ !
ଚଉଦିଗେ ଖାଲି ଶ୍ୟାମଳ ଶସ୍ୟ କୋମଳ ଶୀର୍ଷ ତୋଳି,
ଉଷାର ମୃଦୁଳ ବାୟୁ ସଞ୍ଚାରେ ଉଠୁଥିବ ସୁଖେ ଦୋଳି,
ଭଦଭଦଳିଆ ଉଡ଼ି ବୁଲୁଥିବ ଲତା ପ୍ରାନ୍ତର ତଳେ,
କଜ୍ୱଳପାତି ଖୋଜୁଥିବ ସାଥି ଉଡ଼ି ଉଡ଼ି ଥରେ ଥରେ
ଗାଈଆଳ ପିଲା ବଂଶୀ ବଜାଇ ନେଉଥିବ ଧେନୁପଲ,
ବନ ଭୂଇଁ ଯହିଁ ଝିପାର ଶବଦେ ଲାଗୁଥିବ ସୁଖକର,
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ଫୁଟି ଉଠେ ଯହିଁ ଅଶୋକ ପଲାଶ ବୈଜୟନ୍ତୀ ପତାକା ପରି,
ଅଳିଗୁଞ୍ଜନ ସଙ୍ଗ ସମୀରେ ମନ୍ଦ୍ରେ ଉଠଇ ଥରି,
କେତକୀ ଗନ୍ଧେ ଯେଉଁ ବନଭୂମି ବାସି ଉଠେ ମହ ମହ,
(ଯହିଁ) ଶୁଭ୍ର ଗମ୍ଭୀର ଧଳାମେଘ ପରି, ଫୁଟିଥାଏ ଅହରହ,
ବନମଲ୍ଲିକା ମାଡ଼ିଥାଏ ଯହିଁ ପାଣି ସାହାଡ଼ାର ଦେହେ,
କାଇଞ୍ଚ ପୁଞ୍ଜ ମାଣିକ୍ୟପରି ଥାଏ ଯହିଁ ଲତା ଗେହେ,
ବଟତରୁ ଯହିଁ ଶ୍ୟାମ ପଲ୍ଲବ ଆପଣା ଅଙ୍ଗୁ କାଢ଼ି,
ମଣ୍ଡିତ କରେ ଧରଣୀ ବକ୍ଷ ସେନେହ ସୋହାଗ ବାଢ଼ି,
ଆକାଶ ପରଶୀ ତାଳତରୁ ଶିରେ ବାଇଆ ଚଢ଼େଇ ନୀଡ଼,
ପ୍ରତି ଅନ୍ତରେ କଉତୁକ ଆଣେ, ଆଣେ ମାୟା ସୁଗଭୀର
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହି ଯାଏ ନିତି ମନ୍ଦ୍ର ମଧୁର ତାନେ ।

# ଉସ୍ର

ପଲ୍ଲି କିଶୋରୀ ଜଳ କାଖେ ଧରି ଯହିଁ ସଙ୍ଗିନୀ ରୁଳେ
କଥା ଗପ ହୋଇ ଫେରଇ ସୋହାଗେ ଆପଣା କୁଟୀର ପୁରେ,
ଗରିବ ବିଧବା ଇନ୍ଧନ ଯହିଁ ସଂଗ୍ରହ କରି ଆସେ ;
ଜୀବନର କଥା ଭାଳି ଭାଳି ଯହିଁ ନୀରବ ଲୋତକେ ଭାସେ,
ଗଛଛାଇ ତଳେ କାଠ ଢେରି ଦେଇ ଶ୍ରାନ୍ତ ନିମିଷେ ମାରି,
ଶୂନ୍ୟକୁ ଚାହିଁ ଅଶ୍ରୁ ବୁହାଇ କହେ "ମୁଁ ଅଭାଗୀ ନାରୀ—
ହାତ ଧରି ଯାରେ ବାହା ହୋଇଥିଲି ଅଧାବୟସରେ ଚଳି,
ଗାଆଁ ସାହୁକାର ଜମିବାଡ଼ି ନେଇ ଭୁଲାଇଲା ଘରେ କଲା
ଧର୍ମଦେବତା ଉପରେ ନିତ ହେ ଯିବା ଆସିବା ଯେ କରି ;
ଲୁଚିବ ମୋହର ବିକଳ ଅଶ୍ରୁ ବେଦନା ମୋ ମରମର ।"
ମୋର ସମାଧିର ମନ୍ଦିରଟିଏ ଗଢ଼ିବହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ଶାନ୍ତ ନିରୀହ କୃଷକ ଯେ ପଥେ ନିଜ ବଳମାଲେ ଚାହିଁ
ନୟନୁ ବୁହାଏ ଅଶ୍ରୁ-ଆସାର ଚାହିଁ ଚାହିଁ ପାରେ ନାହିଁ ;
ବୁକୁତଳୁ ତାର କୋହ ଫାଟି ପଡ଼େ ବଦନୁ ନିଫୁଟେ ବାଣୀ
'ଏ ହିଡ଼ ମୁଣ୍ଡେ କେତେଥର ମୁହିଁ ବୋହିନାହିଁ ବିଲେ ପାଣି,
କେତେ ରାତି, କେତେ ସନ୍ଧ୍ୟା ସକାଳ ଶସ୍ୟ ଜଗିନି ଆସି
ଖରାରେ ବରଷରେ କାମ କରିଛି ଆଠକାଳ ବାରମାସୀ ;
ମିଥ୍ୟା ମାମଲି ଯୋଡ଼ି ମୋହ ନାମେ ମୋର ଏ ଟିକକ ଭୂମି,
ନେଇଗଲା ଯେହୁ ସାତ ଜନମରେ ନାହିଁ ମିଳୁ ପେଜ ପାଣି ।
ଧରଣୀ ଉପରେ ମିଥ୍ୟାର ଆହା ଜୀବନ କାହିଁରେ କାହିଁ ?
କେତେକାଳ ସେହୁ ବଞ୍ଚି ପାରିବ କିବା ସମ୍ମାନ ପାଇ ?'
ମୋର ସମାଧିର ମନ୍ଦିରଟିଏ ତୋଳିବ ହେ ସେଇ ଥାନେ
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ;

# ଇଚ୍ଛା

ଜ୍ୟୋସ୍ନା ରାତରେ ପୁରପଲ୍ଲୀରେ ସ୍ୱଗଣ ଓ କୀର୍ତ୍ତନ ।
ଶୁଭୁଥିବ ସନ୍ଧି ବାୟୁହିଲ୍ଲୋଳେ ଭାସି ଭାସି ଅନୁକ୍ଷଣ,
ନୀଳ ନଭତଳେ ଧଳା ମେଘ ସନ୍ଧି ଯାଉଥିବ ସଞ୍ଚର,
ସେ କେଉଁ ସରଗ ଅପ୍‌ସରୀ ବାଳା ଓଢ଼ଣା ଉଡ଼ାଇ ପର
ବନ ପର୍ବତ ଆକାଶ ଭୁବନ ରୂପାର ରାଇଜ ପର ;
ନାଚ ଉଠୁଥିବ ସପନ ପୁରୀର ମୁଗ୍‌ଧ ସୁଷମା ଧର,
ଅଳସ ମରୁତ ବହିଯାଉଥିବ ସଞ୍ଚର ବନେ ବନେ
ବକୁଳ ଗନ୍ଧ ଭାସି ବୁଲୁଥିବ ଚଉଦିଗେ ପ୍ରତି କ୍ଷଣେ ;
ମଲ୍ଲୀ ମାଳତୀ ଝଡ଼ି ପଡ଼ୁଥିବ ଶ୍ୟାମ ବନ ଭୂଇଁ ଧାରେ
ଦର୍ପଣ ପର ଦିଶୁଥିବ ନଈ ସ୍ୱର୍ଣ୍ଣସିକତା ବାରେ ;
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ସନ୍ଧି ବହିଯାଏ ନିତ ମନ୍ଦ୍ର ମଧୁର ତାନେ ;

ମୋର ସମାଧିର ମନ୍ଦିର ଭାଲେ ଏଇ କଥା ଦେବ ଲେଖି
ଅସୀମ କାଳର ବକ୍ଷ ଜନତା ଯାଉଥିବ ଯାହା ଦେଖି;
'ଧରଣୀର କେଉଁ ଅଜ୍ଞାତ କୋଣେ ଜନମିଥିଲି ମୁଁ କବି
କୋଟି ମରମର କାହାଣୀ ଗାଇଛୁ ମରମରେ ଅନୁଭବି ।
ସବୁ ଅନ୍ତର ଅନୁଭୂତ ଯେତେ ଏଇ ଅନ୍ତର ମର୍ମ
ଧରଣୀର ସେବା କରି ଆସିଅଛୁ କବିତାରେ ଅନୁପମ ।
ସକଳ ଅଭାବ ଦୈନ୍ୟର ସହି ସଂଗ୍ରାମ କରି କରି
ଧରଣୀ ସାଗରେ ବୁଲିଛୁ ମୋହର କବି ଜୀବନର ତରୀ ।
ଯାହା ଯେତେବେଳେ ପାଇଚ ଦେଇଚ ଦରିଦ୍ର ମୁହିଁ କବି
ତାହାର ଭିତରେ ଯାଉଥିବ ମୋରେ ବେଳେ ବେଳେ ଅନୁଭବି ।
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ
ଗିରି ନଦୀ ସନ୍ଧି ବହିଯାଏ ନିତ ମନ୍ଦ୍ର ମଧୁର ତାନେ ।

# ପିପାସା

ଏ ଜୀବନ ଯାଉ ଯେତେ ଦୂର
 ପିପାସା ତା' ଯିବନାହିଁ ମରି,
ଖୋଜୁଥିବ ତୁମେ ରହିଥାନ୍ତ—
 ପାଖେ ପୁଷ୍ପ କଳକାନ୍ତି ପରି ।
ଏ ଜୀବନ ଯେତେ ମିଠା ପାଉ
 ତୃପ୍ତି ତା'ର ଆସିବ ତ ନାହିଁ,
ତୁମ ହୃଦ ମଧୁବାଣୀ ପଦେ
 ଶୁଣିବାକୁ ରହିଥିବ ଚାହିଁ !
ଏ ଜୀବନ ଯେତେ ବଡ଼ ହେଉ
 ଧରଣୀର କେଉଁଠାରେ କାହିଁ,
ତୁମେ ଯେବେ ବଡ଼ ନ କରିବ
 ତାଁ' ଭିତରେ କି ଶିକ୍ଷା ମୋ ପାଇଁ ?
ଲକ୍ଷ ନେତ୍ର ଚାହିଁଥିଲା ବେଳେ
 ବୁଜି ହୋଇ ଯାଉ ନେତ୍ର ମମ
ତୁମ ନେତ୍ର ନ ଚାହିଁଲେ ମୋରେ
 ପ୍ରାଣସ୍ପନ ମୋହର ମରଣ !

# ଟିପ୍ପଣୀ

## ଗୋଲଦାସ

କବିଙ୍କ ଗାଆଁର ଜଣେ ସାହସୀ ଓ ବଳିଷ୍ଠ ବ୍ୟକ୍ତି । ତାଙ୍କ ସମ୍ବନ୍ଧରେ ବହୁ ରୋମାଞ୍ଚକର କାହାଣୀ ଲୋକ ମୁଖରେ ଶୁଣାଯାଏ ! ତାଙ୍କ ଜୀବନ ସମ୍ପର୍କୀୟ କେତୋଟି କଥାକୁ ନେଇ କବିତାଟି ଲିଖିତ ! କଂସାଖି ନଦୀ ବାଣପୁର ଅଞ୍ଚଳରେ ପ୍ରବାହିତ । ଆଗେ ବଢ଼ି ଆସିଲେ ଏଥିରେ ବହୁତ ଲୋକ ଭାସି ଯାଆନ୍ତି ବୋଲି ପ୍ରବାଦ ଅଛି । ସୋଲଖି ବାଣପୁରର ସ୍ୱନାମ ଧନ୍ୟ 'ପାହାଡ଼' ।

## ଯେବେ ଭୁଲିଯାଏଁ ଆଉ ଥରେ

କବିତାଟି କବିଙ୍କର ଜଣେ ପ୍ରିୟ ଛାତ୍ରଙ୍କ ମୁଖରେ ଲିଖିତ । ତାଙ୍କ ଘର ଯାଜପୁର ପାଖେ ଗୋଟିଏ ପଲ୍ଲୀ ଗାଁରେ । କବି ବହୁଦିନ ତଳେ ଯାଜପୁର ବିରଜା ସ୍କୁଲରେ ଶିକ୍ଷକତା କରୁଥିଲେ ।

## ତୁମେ ତ ଆସିଲ

କବି ପାରଳା ନକଟବର୍ତ୍ତୀ ଗୁରାଣ୍ଡି ସ୍କୁଲକୁ ଦ୍ୱିତୀୟ ଥର ବଦଳି ହୋଇ ଯାଇଥିଲେ । ସେ ଅଞ୍ଚଳର ତାଙ୍କର ଜଣେ ପ୍ରିୟ ଛାତ୍ର କବିଙ୍କୁ ଦେଖା କରିବାକୁ ଆସିଥିଲେ । ଆଗେ ସେ ସେଇ ହାଇସ୍କୁଲରେ ପଢ଼ୁଥିଲେ ଏବେ ପାରଳାରେ ବି. ଏ. ପଢ଼ୁଛନ୍ତି ।

## କବିଙ୍କ ରଚିତ ଅନ୍ୟାନ୍ୟ କବିତାଗ୍ରନ୍ଥ —

| | | |
|---|---|---|
| ୧) ଅଦ୍ଭୁତ | ଟ ୦-୬୫ | ନୂ. ପ । |
| ୨) ଅଗ୍ନିଶଙ୍ଖ | ଟ ୦-୬୨ | ,, |
| ୩) ରୂପାୟନ | ଟ ୧-୦୦ | ,, |
| ୪) ମାଟିଦୀପ | ଟ ୧-୦୦ | ,, |
| ୫) ଆମ୍ରଲିପି | ଟ ୧-୫୦ | ,, |
| ୬) ଉସ୍ର | ଟ ୨-୦୦ | ,, |
| ୭) ଗୀତ ଓ ବେଳା (ଯନ୍ତ୍ରସ୍ଥ) | ଟ ୧-୫୦ | ,, |
| ୮) ସାଧକର ସ୍ୱପ୍ନ ,, | ଟ ୨-୦୦ | ,, |

ରୂପାୟନ ପଢ଼ି ଡକ୍ଟର ମାନସିଂହ କହିଛନ୍ତି, "ମୋର ମନେ ହୁଏ, ଏଥିରୁ କେତୋଟି କବିତା ଓଡ଼ିଆ ସାହିତ୍ୟରେ ଶାଶ୍ୱତ ପଦ ମଧ୍ୟରେ ଗଣାହେବ ।"

ପ୍ରାପ୍ତିସ୍ଥାନ :— କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ

କିଶୋର ପ୍ରେସ୍, ଦାରକ୍ସ ରୋଡ଼, ବ୍ରହ୍ମପୁର (ଗଞ୍ଜାମ)